# ଆଖି ଫେରିଯାଏ ବାରବାର...
# ଦେଖି ଚମକ ସୁପର ରିନ୍ ର !

Anil Kumar Panigrahy

ଅନିଲ୍ କୁମାର ପାଣିଗ୍ରାହୀ




**ସୁପର ରିନ୍ ର ଶୁଭ୍ରତାର ଚମକ ଅନେକ ବେଶୀ**

ଅନ୍ୟ ଯେ କୌଣସି ଡିଟର୍ଜେଣ୍ଟ ଟେବଲେଟ କିମ୍ବା ବାର୍ ତୁଳନାରେ ଅଧିକ ଶୁଭ୍ର !

ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ



# ଜହ୍ନମାମୁଁ

ଜୁଲାଇ ୧୯୮୨



## ବିଷୟ-ସୂଚୀ


ସମ୍ପାଦକୀୟ ... ୭
ଜହ୍ନମାମୁଁ ସମ୍ବାଦ-ବିଚିତ୍ରା ... ୯
ଦୁର୍ମଦ ... ୧୦
କନ୍ଧୁଣୀର ପ୍ରମାଣ ... ୧୧
ଅଧିକ ... ୧୮
ବର୍ଲି ଦ୍ୱୀପ ... ୧୯
ଅସନ୍ତୋଷର ରହସ୍ୟ ... ୨୭
ଗୂଢ଼ ପ୍ରଶ୍ନ ... ୩୨
ଚିଦାମ୍ବରମ ...
"ଅତିଥି" ...
ଶିବଲୀଳା ...
ସର୍ବୋଚ୍ଚ ନ୍ୟାୟାଳୟ ...
ଦାତା ଓ ମିତ୍ର ...
ଯେସାକୁ ତେସା ...
ପଶୁ-ପକ୍ଷୀ ...
ଫଟୋ-ପରିଚୟ-ପ୍ରତିଯୋଗିତା ...





ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

*Anil Kumar Panigrahy*

ରେଣୁ ମନ ବ୍ୟସ୍ତ, ତୋଳେ ସାଙ୍ଗ ଡିଅନ୍ତି ଡାକି
ଖେଳୁଥାଆନ୍ତୁ ଆମମାନେ ସିଏ ବସେ ଥାକି।
ଭାଳି ଭାଳି ସ୍ଥିର କଲା ସିଏ ତ ତୁହେଁ ଗୋଳି
ମଜାଳିଆ ଖେଳ ଖେଳିବ ଘରେ ବସିକି ।।

ଏକୋ ପେନ ସେଟ୍ ଆଉ କାଗଜ କାଢ଼ିଲା।
ଚୁପ୍‌ଚାପ୍ ଏକୁଟିଆ ଚର୍ ଚର୍ ଆଙ୍କିଲା।
ହମ୍ପ୍‌ଟି-ଡମ୍ପ୍‌ଟି, ଖେଳଣା-କୁଣ୍ଢେଇ, ବାଘମାମୁଁ ତିଆରିଲା
ହଟ୍‌ଚମଟ୍ ବିଦ୍ୟା ଭଳି ନାନା ଚିତ୍ର ରଙ୍ଗେଇଲା ।।

ଏକୋ ଅତି ଉପଯୋଗୀ, ସାଙ୍ଗୁଆ, ନେଳିଆ
ବାଦାମୀ, ହଳଦି ସବୁଜି ପାଟଳ, ନାଲିଆ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ପେ ଦଶ ରଙ୍ଗିଆ ।।



ମାଗଣାରେ
କଲରିଙ୍ଗ
ଫୋଲ୍ଡର




# ଏକୋ
## ...ଟ୍ ପେନ

**...ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !**

...ଟିଙ୍ଗ ପଏଣ୍ଟ୍ସ ପ୍ରାଇଭେଟ୍ ଲିମିଟେଡ, ୧୮, ସୁଭାଷ ରୋଡ, ଭିଲେ ପାର୍ଲେ (ପୂର୍ବ),





ଅଫିସ୍‌ରେ ସ୍ୱାମୀଙ୍କ ଖଟଣି, ପିଲାମାନଙ୍କର ଖେଳକୁଦ,
ଆଉ ମୋର ଦୁନିଆଁ ଯାକର ଘରକାମ କରିବା ପାଇଁ—ଆମ
ସମସ୍ତଙ୍କୁ ପୁଷ୍ଟି ଯୋଗାଏ ହର୍ଲିକ୍ସ । ପରିବାରରେ
ଆମ ସମସ୍ତଙ୍କ ସ୍ୱାସ୍ଥ୍ୟ ଭଲ ରହିବା ଲାଗି ମୁଁ ପ୍ରତିଦିନ
ସେମାନଙ୍କୁ ହର୍ଲିକ୍ସ ଖାଇବାକୁ ଦେଉଛି ।
ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ । ଏଥିରେ ଛାଣିଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ ସୁନେଲି ଗହମର ସମସ୍ତ ପୋଷଣକାରୀ ଗୁଣ ଭରି ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର ୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।
Horlicks
The Great Nourisher

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍‌ଡୀ

---

ଆଜି 'ଜହ୍ନମାମୁଁ' ୨୦ଂଶ ବର୍ଷରେ ପଦାର୍ପଣ କରୁଛି । ପାଠକ ପଠିକାମାନଙ୍କ ପାଖରୁ ଏ ପତ୍ରିକା ଯେପରି ସ୍ନେହ ଶୁଭେଚ୍ଛା ପାଇଛି, ତାହା ଅମୂଲ୍ୟ । ନିଜ ଜୀବନରେ ନୂତନ ବର୍ଷ ଆରମ୍ଭରେ 'ଜହ୍ନମାମୁଁ' ସମସ୍ତଙ୍କର ଶୁଭ କାମନା କରୁଛି ।

## ଅମରବାଣୀ

ସଦ୍‌ବିଦ୍ୟା ଶକ୍ୟତେ ଲବ୍‌ଧୁମ୍ ଗୁରୁଣାମୁପଦେଶତଃ ।
ଶୀଲଂ ସ୍ୱାଭାବିକଂ ତତ୍ତୁ ଲଭ୍ୟତେ ନୋପଦେଶତଃ ॥

[ଗୁରୁଙ୍କ ଉପଦେଶରୁ ସଦ୍‌ବିଦ୍ୟା ଲବ୍‌ଧ ହୋଇ ପାରେ । କିନ୍ତୁ ଶୀଲ ଆଚରଣ ଭଳି ଗୁଣ ସ୍ୱାଭାବିକ, ତାହା ଉପଦେଶରୁ ଆସେ ନାହିଁ ।]

---

ବର୍ଷ : ୨୦ ଜୁଲାଇ ୧୯୮୭ ଅଙ୍କ : ୧

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦





"ମୁଁ ଜାଣେ, ଦାନ୍ତର ଛୋଟ ଛୋଟ ଅବର୍ଜିଆ ଦାନବସବୁ ମୋ ଦାନ୍ତ କଣା କରି ଦେଇ ପାରିବେ!

କାରଣ ମୋ ମା'ମୋତେ ବୁଝେଇ ଦେଇଥିଲେ ଏଗୁଡ଼ିକ ପ୍ରକୃତରେ ହେଉଛି ଜୀବାଣୁ '('ବ୍ୟାକଟେରିଆ)' ଯାହାକି ଖାଦ୍ୟକଣ ସହିତ ମିଶି ଅମ୍ଳଛୁଡ଼ନ୍ତି ଓ 'ଦାନ୍ତର ଏନାମେଲ'କୁ ଆକ୍ରମଣ କରି 'ଦାନ୍ତ କଣା'କରନ୍ତି।



ମୁଁ କିନ୍ତୁ ଜାଣିଥିଲି ମୁଁ ସୁରକ୍ଷିତ କାରଣ ମୋର ସୁରକ୍ଷାର ଅସ୍ତ୍ର ହେଉଛି

ମୋର ସୁପର ଫାଇଟର!

ଫୋରହ୍ୟାନ୍ସ ଫ୍ଲୋରାଇଡ।
ଦାନ୍ତକଣା ବିରୁଦ୍ଧରେ ସଂଗ୍ରାମରେ ଏହା ମୋତେ ବିଜୟୀ ହେବାରେ ସାହାଯ୍ୟ କରେ।






ମୋ ସୁପରଫାଇଟରରେ ଥିବା ଫ୍ଲୋରାଇଡ ମୋର 'ଦାନ୍ତ ଏନାମେଲ'କୁ ସୁଦୃଢ଼ କରିଦିଏ ଓ ଯନ୍ତ୍ରଣାଦାୟକ 'ଦାନ୍ତକଣା' କରେଇ ଦିଏ ନାହିଁ

ମୋ ମା'ସତରେ ଭାରୀ ଭଲ। ମୁଁ ମୋ ମାଙ୍କଠାରୁହିଁ ସେ ସ୍ୱାଦଭରା, ଫେଣଭରା ସୁପର ଫାଇଟର କଥା ସବୁ ଶିଖି ନେଇଛି।"




ଫୋରହ୍ୟାନ୍ସ ଫ୍ଲୋରାଇଡ
ଦାନ୍ତ କଣାର ପ୍ରତିରୋଧକ ସୁପରଫାଇଟର।



## ଧୂମ୍ର-ରାକ୍ଷସ

ଧୂମ୍ରପାନ-ଜନିତ କାରଣରୁ ପୃଥିବୀରେ ପ୍ରତିଦିନ ୨୯ ହଜାର ଲୋକ ମୃତ୍ୟୁ ବରଣ କରନ୍ତି । ଆହୁରି ଅନେକେ ନାନା ରୋଗରେ କଷ୍ଟ ପାଆନ୍ତି । କଲିକତାରେ ଅନୁଷ୍ଠିତ ପରିବାର କଲ୍ୟାଣ ସମ୍ମିଳନୀ ଏହା ପ୍ରକାଶ କରିଛନ୍ତି ।

## ସେପାରିରୁ ପ୍ରତ୍ୟାବର୍ତ୍ତନ



ଚୀନା ଯୁବତୀ ଝାଂ ଚାଓକାନ୍ ସାଇକେଲ୍ ଯୋଗେ ବରଫ ପାଲଟିଯାଇଥିବା ଗୋଟିଏ ନଦୀ ଦେଇ ଗଲାବେଳେ ସେ ଭୀଷଣ ଥଣ୍ଡା ନଦୀ ଗର୍ଭରେ ପଡ଼ିଗଲେ । ତାଙ୍କୁ ଉଦ୍ଧାର କରାଗଲା, କିନ୍ତୁ ତାଙ୍କ ହୃତ୍‌କ୍ରିୟା ବନ୍ଦ ହୋଇଗଲା । ଅଶୀ ମିନିଟ ପରେ ପୁଣି ହୃତ୍‌ଯନ୍ତ୍ର ଚାଲିଲା । ଏହା ଚିକିତ୍ସା ଜଗତରେ ଅପୂର୍ବ ।



## ଆଖିର ଯତ୍ନ

ଭାରତରେ ପ୍ରତି ବର୍ଷ ଚଉଦହଜାର ଶିଶୁ ଦୃଷ୍ଟିଶକ୍ତି ହରାନ୍ତି— ବିଭିନ୍ନ କାରଣରୁ । ପୃଥିବୀରେ ଯେତେ ଅନ୍ଧ ଅଛନ୍ତି, ତାହାର ଏକ ତୃତୀୟାଂଶ ଭାରତରେ ।

# ଜାଣନ୍ତି କି ?

୧. ପଞ୍ଚସଖା ବୋଇଲେ କିଏ କିଏ ?

୨. ନେପୋଲିଅନ୍ କେଉଁଠି ଜନ୍ମଗ୍ରହଣ କରିଥିଲେ ?

୩. ଦୀର୍ଘକାଳ ବ୍ୟାପି ନିୟମିତ ଅଭିନୟ ଚାଲୁ ରଖିଥିବା ଓଡ଼ିଶାର ଦୁଇ ପେଶାଦାର ରଙ୍ଗମଞ୍ଚର ନାମ ?

୪. 'କବିବର' ବୋଲି କେଉଁ କବି ସମ୍ବୋଧିତ ହେଉଥିଲେ ?

୫. ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀର ନାମ ?

(୬୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

# ଦୁର୍ମଦ

ଦେବରାଜ ଇନ୍ଦ୍ରଙ୍କ ସଭାରେ ଥିବା ନର୍ତ୍ତକୀ ଉର୍ବଶୀ ମର୍ତ୍ତ୍ୟର ଜଣେ ରାଜା ପୁରୁରବଙ୍କୁ ଭଲ ପାଇ ବିଭା ହେବାକୁ ସ୍ଥିର କଲେ ।

ଗନ୍ଧର୍ବମାନଙ୍କ ରାଜା ଦୁର୍ମଦଙ୍କର ଖୁବ୍ ଇଚ୍ଛା ଥିଲା ଯେ ସେ ଉର୍ବଶୀଙ୍କୁ ବିଭା ହେବେ । ତାଙ୍କ ଇଚ୍ଛା ବିଫଳ ହେବାକୁ ଯାଉଛି ଦେଖି ସେ କ୍ରୁଦ୍ଧ ହେଲେ । ଦିନେ ରାତିରେ ଉର୍ବଶୀ ନନ୍ଦନକାନନରେ ପୁରୁରବଙ୍କୁ ପ୍ରତୀକ୍ଷା କରୁଥାନ୍ତି । ଦୁର୍ମଦ ଗନ୍ଧର୍ବ ହୋଇଥିବା ଯୋଗୁଁ ନାନା ରୂପ ଧାରଣ କରି ପାରୁଥିଲେ । ସେ ପୁରୁରବଙ୍କ ରୂପ ଧରି ପ୍ରଥମେ ଯାଇ ନନ୍ଦନକାନନରେ ପହଞ୍ଚିଗଲେ । ଉର୍ବଶୀ ତାଙ୍କୁ ଫୁଲମାଳ ଦେଇ ସ୍ୱାଗତ କଲେ ଓ ତାଙ୍କ ସହ ମଧୁର ବାର୍ତ୍ତାଳାପ କଲେ । କିଛି ସମୟ ପରେ ପହଞ୍ଚିଗଲେ ଅସଲ ପୁରୁରବ । ଉର୍ବଶୀ ଦୁର୍ମଦଙ୍କ ଛଳନା ବୁଝି-ପାରି ଅଭିଶାପ ଦେଲେ—ସେ ରାକ୍ଷସ ହେବେ । ଦୁର୍ମଦ ଅନୁତାପ କରନ୍ତେ ଉର୍ବଶୀ କହିଲେ ଯେ ରାକ୍ଷସ ନ ହୋଇ ଦୁର୍ମଦ ମଣିଷ ଭାବରେ ଜନ୍ମ ନେବେ ଓ ଯୁଦ୍ଧରେ ପ୍ରାଣ ଦେବେ । ତାହାହିଁ ହେଲା ।

ଏହା ପରେ ଉର୍ବଶୀ ମର୍ତ୍ତ୍ୟକୁ ଆସି ରାଜା ପୁରୁରବଙ୍କୁ ବିଭା ହୋଇ ଅନେକ ଦିନ ପର୍ଯ୍ୟନ୍ତ ମଣିଷ ଭଳି ଜୀବନଯାପନ କରିଥିଲେ ।



Anil Kumar Panigrahi



# କରୁଣାର ପ୍ରମାଣ

କୌମୁଦୀ ରାଜ୍ୟର ପରିସର ଭିତରେ ବ୍ୟାପକ ଅଞ୍ଚଳ ବ୍ୟାପି ଗୋଟିଏ ବଣ ଥିଲା । ତାହାର ନାମ ଶାନ୍ତିବନ । ସେ ବଣର ଗୋଟିଏ ପ୍ରାନ୍ତରେ ଜୀବାନନ୍ଦ ନାମକ ଜଣେ ଋଷି ରହୁଥିଲେ । ତାଙ୍କର ଜଣେ ଶିଷ୍ୟ ଥିଲେ । ନାମ ପ୍ରବୋଧ ।

ପ୍ରବୋଧ ବେଦ ବେଦାନ୍ତ ଅଧ୍ୟୟନରେ ଖୁବ୍ ପରାକାଷ୍ଠା ଦେଖାଇଲେ । ଥରେ ଗୁରୁ ଜୀବାନନ୍ଦ କହିଲେ, "ବାପା ପ୍ରବୋଧ, ଶାସ୍ତ୍ର ଜ୍ଞାନ ସାଙ୍ଗକୁ ଭିତରେ ଭକ୍ତିଭାବ ଉଦ୍ରେକ ହେବା ଆବଶ୍ୟକ । ଈଶ୍ୱର ଦର୍ଶନରେ ଭକ୍ତିଭାବର ଉଦୟ ହୁଏ । ମୋ କଥା ମାନି ତମେ ଥରେ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରି ଆସ ।"

"ସେଥିରେ କ'ଣ ଅଧିକା ଲାଭ ହେବ ?" ପ୍ରବୋଧ ପଚାରିଲେ ।

"ହଁ ବାପା । ଈଶ୍ୱର ଦର୍ଶନ କଲେ ନୟନ ପବିତ୍ର ହେବ । ପୁଣି ଭକ୍ତିଭାବରେ ଉଦ୍ରେକ ହେଲେ ହୃଦୟ ନିର୍ମଳ ହେବ ।" ଗୁରୁ କହିଲେ । ସେ ଗୋଟିଏ ଶୁଭଦିନ ମଧ୍ୟ ନିର୍ଣ୍ଣୟ କରିଦେଲେ ।

ଯଥା ସମୟରେ ପ୍ରବୋଧ ଗୁରୁଙ୍କଠାରୁ ବିଦାୟ ନେଇ କାଶୀ ଅଭିମୁଖେ ଯାତ୍ରା କଲେ ।

ପ୍ରାୟ ପାଞ୍ଚଦିନ ଚାଲିବା ପରେ ଦିନେ ତାଙ୍କ ଚଟି ଜୋତା ଛିଡ଼ିଗଲା । ଭାଗ୍ୟକୁ ସେ ଗୋଟିଏ ବରଗଛ ମୂଳରେ ଜଣେ ମୋଚି ବସିଥିବାର ଦେଖି ତାକୁ ଜୋତା ମରାମତି କରିବାକୁ ଦେଲେ । ତା' ସହ କଥା କହି ବୁଝିଲେ, ଆଖପାଖରେ ଗାଁ ଗଣ୍ଡା ନାହିଁ । ସେ ନିଜେ ଗୋଟିଏ କୁଡ଼ିଆ ବନାଇ ସେଠି ରହିବାର କାରଣ, ସେ ବାଟ ଅନେକ ଗୁଡ଼ିଏ ସହର ଓ ତୀର୍ଥସ୍ଥାନ ସହିତ ସଂଯୁକ୍ତ

"ସତ୍ୟ ଏକା ଯିନା ମହନ୍ତ ପଣିଆ ! ଆଉ ସବୁ କଥା ଅଢ଼େଇ ଦିନିଆ ।"



ହୋଇଥିବାରୁ ସେ ବାଟରେ ଅନେକ ବାଟୋଇ ଯିବା ଆସିବା କରନ୍ତି । ମଝେ ମଝେ ତାକୁ ଜୋତା ସିଲେଇ କରିବା କାମ ମିଳେ । ସେଥିରେ ସେ କୌଣସି ମତେ ଚଳିଯାଏ । ପ୍ରବୋଧଙ୍କ ଜୋତା ସେ ମରାମତି କରିଦେଲା । ପ୍ରବୋଧ ତାକୁ ଖୁସି ହୋଇ ଗୋଟିଏ ମୁଦ୍ରା ଦେଲେ ।

ମୋଚି ଦୋଦୋପାଞ୍ଚ କରି କହିଲା, "ବାବୁ! ମୋଠାରେ ତ ରେଜା ପଇସା ନାହିଁ !"

ପ୍ରବୋଧ କହିଲେ, "ରେଜା ଲୋଡ଼ା ନାହିଁ । ତମେ ମୁଦ୍ରାଟି ରଖ ।"

ମୋଚି ଖୁସି ହେଲା ଓ ତାଙ୍କୁ ନମସ୍କାର କଲା । ପ୍ରବୋଧ ତା'ର ମଙ୍ଗଳ କାମନା କଲେ ।

ମୋଚି ପଚାରିଲା, "ବାବୁ, ଆପଣ କୁଆଡ଼େ ଯାଉଛନ୍ତି ?" ପ୍ରବୋଧ ଯେତେବେଳେ କହିଲେ କି ସେ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିବାକୁ ଯାଉଛନ୍ତି, ମୋଚି ଭକ୍ତି ଗଦ୍‌ଗଦ୍ କଣ୍ଠରେ କହିଲା, "ବାବୁ, ଜୀବନେ ମୁଁ ଯାଇ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିବି, ସେ ଆଶା ନାହିଁ । ଆପଣ ଭାଗ୍ୟବାନ । ଦୟାକରି ଏ ମୁଦ୍ରାଟି ନେଇଯା'ନ୍ତୁ । ମୋ ତରଫରୁ ତାଙ୍କୁ ପ୍ରଣାମୀ ଦେବେ ।"

ମୋଚିର ଭକ୍ତିରେ ପ୍ରବୋଧ ମୁଗ୍ଧ ହେଲେ । ସେ ମୁଦ୍ରାଟି ନିଜ ଚଦର କାନିରେ ବାନ୍ଧିଲେ ।

ପ୍ରବୋଧ ଦୁଇଦିନ ବାଟ ଚାଲିବା ପରେ ଦେଖିଲେ, ଗାଁ ଗଣ୍ଡା ଦେଇ ଗଲେ ତାଙ୍କୁ କାଶୀରେ ପହଞ୍ଚିବାକୁ ଅନେକ ଦିନ ଲାଗିଯିବ । ସେ ଲୋକଙ୍କଠାରୁ ବୁଝିଲେ, ବଣ ଭିତରେ ଦେଇ ଗଲେ ବାଟ ପ୍ରାୟ ଅଧା ହେବ । ସେ ବଣ ପାଖରେ ଗୋଟିଏ ଚଟିଘରେ ଦିନଟିଏ ଅପେକ୍ଷା କଲେ । କୌଣସି ଯାତ୍ରୀଦଳ ବଣ ଭିତର ଦେଇ ଯିବାକୁ ପ୍ରସ୍ତୁତ ଥିଲେ ତାଙ୍କ ସହ ସେ ଯିବେ, ଏଇଆ ଥିଲା ତାଙ୍କ ଉଦ୍ଦେଶ୍ୟ । କିନ୍ତୁ ସେପରି କୌଣସି ଯାତ୍ରୀଦଳ ସେ ଦେଖିଲେ ନାହିଁ । ସେ ଏକାକୀ ବଣ ଭିତର ଦେଇ ଯିବାକୁ ପ୍ରସ୍ତୁତ ହେଲେ ଓ ବଣରେ ପଶିଲେ ।

ପ୍ରଥମେ ଅଳ୍ପ ଘନ ବଣ ପଡ଼ିଲା ।

Anil kumar Panigrahi



ଏହାପରେ ପଡ଼ିଲା ପାହାଡ଼ିଆ ନିର୍ଜନ ରାସ୍ତା । ପ୍ରବୋଧ ଏକାଗ୍ର ମନରେ ବାଟ ଚାଲୁଛନ୍ତି, ହଠାତ୍ ଘୋଡ଼ା ଝପଟାଇ ତାଙ୍କ ପାଖରେ ଆସି ପହଞ୍ଚିଗଲା ଦୁର୍ଦ୍ଦାନ୍ତ ଦିଶୁଥିବା ଜଣେ ଲୋକ । "ପଥିକ ! ଅଗ୍ନିଶିଖ ଡାକୁର ନାମ ଶୁଣିଛ ? ତା' ନାମରେ ରାଜା ପ୍ରଜା ସମସ୍ତେ ଥରହର । ମୁଁ ସେହି ଡାକୁ । ପାଖରେ ଯାହା ଅଛି ଦେଇଦିଅ । ନହେଲେ ପ୍ରାଣ ଯିବ ।"

ପ୍ରବୋଧ ନିଜ ଟଙ୍କା ଥଳିଟି ଡାକୁ ହାତକୁ ବଢ଼ାଇ ଦେଲେ । ଡାକୁ ପ୍ରଖର ଦୃଷ୍ଟିରେ ତାଙ୍କୁ ଆପାଦମସ୍ତକ ଦେଖୁଥାଏ । ସେ ପଚାରି ଦେଲା, "ତଦର କାନରେ କ'ଣ ବାନ୍ଧିଛ ? ଜଲଦି ଫିଟାଅ ।"

ପ୍ରବୋଧ କାନ ଫିଟାଇ ମୁଦ୍ରାଟି ବାହାର କଲେ । କିନ୍ତୁ କହିଲେ, "ଭାଇ, ମୋର ଯାହା ଥିଲା, ତମକୁ ଦେଇ ଦେଇଛି । ଏ ମୁଦ୍ରାଟି କାଶୀ ବିଶ୍ୱନାଥଙ୍କ ହୁଣ୍ଡିରେ ପକାଇବା ନିମନ୍ତେ ମୋତେ ଜଣେ ଗରିବ ମୋଚି ଦେଇଛି । ତମେ ଏହାକୁ ମୋଠାରୁ ନିଅ ନାହିଁ ।"

ଡାକୁ ସ୍ତବ୍ଧ ହୋଇ ରହିଲା । "ଜଣେ ଗରିବ ମୋଚି ତମ ହାତରେ ବିଶ୍ୱନାଥଙ୍କୁ ପ୍ରଣାମୀ ପଠାଇଛି ? ଆଚ୍ଛା ! ତେବେ ତମେ ଏ ଥଳି ବି ନେଇଯାଅ । ମୋ ତରଫରୁ ଦିଅଁଙ୍କୁ ପ୍ରଣାମୀ ଦେବ ।" ଏହା କହି ଡାକୁ ପ୍ରବୋଧଙ୍କ ଟଙ୍କା ଥଳି ତାଙ୍କୁ ଫେରାଇ ଦେଲା ।

ଏହାପରେ ଆହୁରି ଦୀର୍ଘପଥ ବାକି ଥାଏ । ବାଟରେ ପଡିଲା ଭୀଷଣ ଘନ ଜଙ୍ଗଲ । ପ୍ରବୋଧ ଜଙ୍ଗଲ ଭିତର ଦେଇ ଯାଉଛନ୍ତି, ପ୍ରବଳ ହୁଙ୍କାର ଛାଡ଼ି ତାଙ୍କ ଆଡ଼କୁ ଲମ୍ଫଦେଇ ଆସିଲା ଗୋଟିଏ ବ୍ରହ୍ମରାକ୍ଷସ । ସେ ପ୍ରବୋଧଙ୍କୁ ଗୋଟାଏ ହାତରେ କାବୁ କରିନେଇ ଖାଇବାକୁ ଉଦ୍ୟତ ହେଲା ।

ପ୍ରବୋଧ ଭୀଷଣ ଶଙ୍କି ଯିବା ସତ୍ତ୍ୱେ କହିଲେ, "ରାକ୍ଷସ ! ମୋର ଅନୁରୋଧ ଶୁଣ । ମୁଁ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିବାକୁ ଯାଉଛି । ଜଣେ ଗରିବ ମୋଚି ମୁଁ ତାକୁ ଦେଇଥିବା

ପାରିଶ୍ରମିକ ଓ ଜଣେ ଡାକୁ ମୋଠୁଁ ଲୁଣ୍ଠନ କରିନେଇଥିବା ଅର୍ଥ ପୁଣି ମୋତେ ଦେଇ ବାଅଁଙ୍କ ପାଖରେ ପଠାଇ ଦେବାକୁ କହିଛନ୍ତି ଓ ମୁଁ ସେମାନଙ୍କୁ ତାହା କରିବି ବୋଲି ପ୍ରତିଶ୍ରୁତି ଦେଇଛି । ତୁମେ ମୋତେ ବର୍ତ୍ତମାନ ଗ୍ରାସ କଲେ ମୋ ପ୍ରତିଶ୍ରୁତି ରକ୍ଷା କରି ପାରିବି ନାହିଁ । ଫଳରେ ପାପୀ ହେବି । ମୁଁ କଥା ଦେଉଛି, ଏହି ବାଟରେ ଲେଉଟି ଆସିବି । ସେତେବେଳେ ତମେ ମୋତେ ଖାଇବ । ମୋତେ ବିଶ୍ୱାସ କର ।"

ପ୍ରବୋଧଙ୍କ କଥାରେ ରାକ୍ଷସର ବିଶ୍ୱାସ ହେଲା । ସେ ତାଙ୍କୁ ଛାଡି ଦେଲା ।

ବଣରୁ ବାହାରିବା ମାତ୍ରେ ଦଳେ ଯାତ୍ରୀଙ୍କ ସହ ପ୍ରବୋଧଙ୍କର ସାକ୍ଷାତ୍ ହେଲା । ସେ ଯାତ୍ରୀମାନଙ୍କ ଦଳରେ ଜଣେ ବିଶିଷ୍ଟ ବଣିକ ଥିଲେ । ଗୁରୁ ଜୀବାନନ୍ଦଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ସେ ଜୀବାନନ୍ଦଙ୍କ ଶିଷ୍ୟ ପ୍ରବୋଧଙ୍କୁ ଭେଟି ବହୁତ ଆନନ୍ଦିତ ହେଲେ । ତେଣିକି ପ୍ରବୋଧଙ୍କ ଖିଆପିଆ ଖର୍ଚ୍ଚ ସବୁ ସେ ବହନ କଲେ । କାଶୀରେ ପହଞ୍ଚିବା ପରେ ସେ ଯାତ୍ରୀଦଳ ଯେଉଁ ଅତିଥି ଭବନରେ ରହିଲେ, ପ୍ରବୋଧ ମଧ୍ୟ ସେହିଠାରେ ରହିଲେ ।

ରାସ୍ତାରେ ଯାହା ଯାହା ଘଟିଥିଲା, ପ୍ରବୋଧ ସେସବୁ ବଣିକଙ୍କୁ କହିଲେ । ବଣିକ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଆତଙ୍କିତ ହେଲେ । ସେ ପ୍ରବୋଧଙ୍କୁ କହିଲେ, "ଯାହା ହେବାର ହେଲାଣି । ଆପଣ ଆମ ସାଙ୍ଗରେ



Anil Kumar Panigrahy

କୌମୁଦୀ ରାଜ୍ୟକୁ ଫେରିବେ । ମୁଁ ଆପଣଙ୍କୁ ନେଇ ଶିବାନନ୍ଦଙ୍କ ପାଖରେ ପହଞ୍ଚାଇ ଦେବି । ବଣ ରାସ୍ତାରେ ଆସିବା ଉଚିତ ହୋଇନାହିଁ ।"

ପ୍ରବୋଧ ବଣିକଙ୍କ କଥାରେ ରାଜି ହେଲେ । କିନ୍ତୁ ଯେଉଁଦିନ ସେମାନେ କାଶୀ ଛାଡ଼ିବା କଥା, ସେଦିନ ସେ କହିଲେ, "ମହାଶୟ, ମୋର ଏଠାରେ ଆଉ ଦିନେ ଦୁଇଦିନ ରହିବାକୁ ଇଚ୍ଛା ।"

ବଣିକ କାଶୀ ଛାଡ଼ିବା ପରଦିନ ପ୍ରବୋଧ କିନ୍ତୁ ବଣରେହିଁ ପଶିଲେ ଓ ବ୍ରହ୍ମରାକ୍ଷସକୁ ଖୋଜିଲେ । ତା' ନାମ ରୁଧୀରବର୍ଣ୍ଣ ବୋଲି ସେ ମନେ ରଖିଥିଲେ । ସେ ସେହି ନାମରେ ପାଟି କରି ତାକୁ ଡାକିଲେ ।

ହଠାତ୍ ବଣୁଆ ଶିକାରୀ ଭଳି ଦିଶୁଥିବା ଜଣେ ଲୋକ ଆସି ତାଙ୍କୁ ପ୍ରଣାମ କଲା ଓ କହିଲା, "ମହାଶୟ, ଆପଣଙ୍କ ପ୍ରତି ମୁଁ କ'ଣ କହି କୃତଜ୍ଞତା ଜଣାଇବି ? ଆପଣ ଈଶ୍ୱରଙ୍କ ଆଶୀର୍ବାଦ ରୂପେ ମୋ ପାଖକୁ ଆସିଥିଲେ । ଜଣେ ଭକ୍ତର ପ୍ରାଣ ମୁଁ ନେଲି ନାହିଁ । ସେହି ପୁଣ୍ୟରୁ ମୁଁ ମଣିଷ ହୋଇ ଯାଇଛି ।"

ପ୍ରବୋଧ ରାକ୍ଷସ ରୁଧୀରବର୍ଣ୍ଣକୁ ମଣିଷ ରୂପରେ ଦେଖି ଆନନ୍ଦିତ ହେଲେ । ସେ ହସି ହସି କହିଲେ, "ମୁଁ ତେବେ ଯାଇପାରେଁ ?"

"ଆଜ୍ଞା, ଯଦି କେବେ ମୋ ଦ୍ୱାରା କିଛି ସେବା ପାଇବା ଦରକାର ହେବ, କହିବେ ।" ରୁଧୀରବର୍ଣ୍ଣ କହିଲା ।





ମଣ୍ଡରେ ବସିବାଛୁ ମୁଁ ରଜା ହେଲି । ଏସବୁ କାଶୀ ବିଶ୍ୱନାଥଙ୍କ କରୁଣା ଓ ଆପଣଙ୍କ ଆଶୀର୍ବାଦ ।"

ପ୍ରବୋଧ ବିସ୍ମିତ ଓ ଆନନ୍ଦିତ ହେଲେ। ଭିଲ୍ ରଜା ତାଙ୍କୁ ତା' ଅତିଥି ରୂପେ କିଛିଦିନ ରହିବାକୁ ଅନୁରୋଧ କଲା । କିନ୍ତୁ ସେ ରହିଲେ ନାହିଁ । "ମୋତେ କିଛି ଉପଦେଶ ଦିଅନ୍ତୁ ।" ଭିଲ୍ ରଜା କହିଲା।

"ସମସ୍ତଙ୍କ ପ୍ରତି ସଦୟ ହେବ ।" ପ୍ରବୋଧ କହିଲେ ।

"ମୁଁ ଏହା ମନେ ରଖିବି ।" ଭିଲ୍ ରଜା କହିଲା ।

ପ୍ରବୋଧ ଖୁସି ହୋଇ ଭିଲ୍ ରଜାଠୁ ବିଦାୟ ନେଇ ଅଗ୍ରସର ହେଲେ । ବଣରୁ ବାହାର ହେବା ପରେ ସେ ମୋଟକୁ ଖୋଜିଲେ, କିନ୍ତୁ ପାଇଲେ ନାହିଁ । ଗୋଟିଏ ଛୋଟ ସହର ବାଟରେ ଯାଉଁ ଯାଉଁ ସେ ନୂଆ ଦୋକାନଟିଏ ଦେଖିଲେ । ଦୋକାନୀ ଦୌଡ଼ି ଆସି ତାଙ୍କୁ ପ୍ରଣାମ କଲା । ଦେଖିବା ବେଳକୁ ସେ ସେହି ମୋଟ । ସେ କହିଲା, "ମହାଶୟ, କେଇଦିନ ତଳେ ରଜା ଏ ବାଟରେ ଯାଉଥିଲେ । ମୋ କାରଗରି ଦେଖି ମୁଗ୍ଧ ହୋଇ ମୋତେ ଏ ଘର ଦେଲେ ଓ ଦୋକାନ ପାଇଁ ପୁଞ୍ଜି ଦେଲେ । ଏସବୁ କାଶୀ ବିଶ୍ୱନାଥଙ୍କ କରୁଣା ଓ ଆପଣଙ୍କ ଆଶୀର୍ବାଦ ।"

ପ୍ରବୋଧ ତାକୁ ଆଶୀର୍ବାଦ ଦେଇ ଅଗ୍ରସର ହେଲେ । କିଛି ଦୂର ଯିବା ପରେ ସେ ଦେଖିଲେ ବଣ ଭିତରେ ଧୁମ୍‌ଧାମ୍ ଉତ୍ସବ ଲାଗିଛି । ଭିଲ୍‌ମାନେ ନାଚଗୀତରେ ମାତିଛନ୍ତି । ପ୍ରବୋଧ ଜଣକୁ ପଚାରିଲେ, "ଆଚ୍ଛା, ଅଗ୍ନିଶିଖ ଡାକୁ କେଉଁଠି ଥାଇପାରେ ?" ସଙ୍ଗେ ସଙ୍ଗେ ସେ ଭିଲ୍ ପ୍ରବୋଧଙ୍କୁ ସସମ୍ମାନେ ସେମାନଙ୍କ ରଜା ପାଖକୁ ନେଇଗଲା । ରଜା ପ୍ରବୋଧଙ୍କୁ ପ୍ରଣାମ କରି କହିଲା, "ମହାଶୟ, ମୁଁ ସେହି ଡାକୁ । ଭିଲମାନଙ୍କ ରଜା ମରିଯିବାରୁ ସେମାନଙ୍କ ରୀତି ଅନୁସାରେ ସେମାନେ ଗୋଟିଏ କପୋତ ଉଡ଼ାଇ ଦେଲେ । କପୋତ ଆସି ମୋ

ପ୍ରବୋଧ ଶାନ୍ତିବନକୁ ଫେରି ଆସି ପହଞ୍ଚି ଗୁରୁ ଜୀବାନନ୍ଦଙ୍କୁ ସବୁ କଥା କହିଲେ । ସେ ନିଜେ ଯେତିକି ଖୁସି ହୋଇଥାନ୍ତି ଗୁରୁ ବି ସେତିକି ଖୁସି ହେଲେ । କିନ୍ତୁ ଜୀବାନନ୍ଦ ପଚାରିଲେ, "ଗୁରୁଦେବ ! ବ୍ରହ୍ମରାକ୍ଷସ, ଡାକୁ ଓ ମୋଚ ସମସ୍ତେ ତୁରନ୍ତ ବିଶ୍ୱନାଥଙ୍କ କୃପା ଲାଭ କଲେ । ମୁଁ କିନ୍ତୁ କିଛି ପାଇଲି ନାହିଁ କପରି ?"

ଜୀବାନନ୍ଦ ହସିଲେ ଓ କହିଲେ, "ତମେ ଏ ପ୍ରଶ୍ନ ଉପରେ ଭଲ କରି ଚିନ୍ତା କରିଛ ?"

ପ୍ରବୋଧ ନୀରବ ରହିଲେ ।

ଜୀବାନନ୍ଦ ବୁଝାଇ ଦେଲେ : "ସେ ତିନି ଜଣଙ୍କ ପ୍ରାର୍ଥନା ଓ ଆବଶ୍ୟକତା ଯାହା, ତମର ତାହା ନୁହେଁ । ବ୍ରହ୍ମରାକ୍ଷସ ତୁରନ୍ତ ମଣିଷ ହୋଇଯିବାର କାରଣ ରାକ୍ଷସ ରୂପେ ସେ ଆହୁରି କେତେ ଅନ୍ୟାୟ କରିଥାନ୍ତା । ଡାକୁ ବିଷୟରେ ବି ଏକା କଥା ପ୍ରଯୁଜ୍ୟ । ମୋଚ ଦାରିଦ୍ର୍ୟରୁ ରକ୍ଷା ପାଇଗଲା, କାରଣ ତାହାହିଁ ଥିଲା ତା'ର ପ୍ରାର୍ଥନା । ତମେ ବିଶ୍ୱନାଥଙ୍କ ପାଖକୁ ଯାଇଥିଲ କୌଣସି ସ୍ଥୂଳ ଲାଭ ଆଶାରେ ନୁହେଁ, ତମ ଚେତନାର ବିକାଶ ପାଇଁ । ତାହା ହୋଇ ନାହିଁ ବୋଲି କହୁଛ ?"

ପ୍ରବୋଧ ନୀରବ ରହିଲେ ।

ଜୀବାନନ୍ଦ କହିଲେ, "ତମେ ପ୍ରଥମେ ବଣିକଙ୍କ ସହ ଅଲଗା ବାଟରେ ଆସିବାକୁ ବାହାରିଥିଲ । ପୁଣି କପରି ବଣ ଦେଇ ଆସିଲ ? ସେ ସାହସ, ସତ୍ୟ ପ୍ରତି ନିଷ୍ଠା କେଉଁଠୁ ଆସିଲା ? ତାହାହିଁ ତମ ପ୍ରତି ବିଶ୍ୱନାଥଙ୍କ କରୁଣା । ତାହାହିଁ ତମ ଚେତନାର ବିକାଶର ପ୍ରମାଣ । ସତ୍ୟ ପ୍ରତି ନିଷ୍ଠା ଯୋଗୁଁ ବ୍ରହ୍ମରାକ୍ଷସର ଆହାର ହେବା ପାଇଁ ଜାଣି ଜାଣି ଆସିବା ସାଧାରଣ ମଣିଷ ପକ୍ଷରେ ସମ୍ଭବ ନୁହେଁ ।"

ପ୍ରବୋଧଙ୍କ ଆଖିରେ ଅଶ୍ରୁ ଦେଖା ଦେଲା । ସେ ଗୁରୁଙ୍କୁ ପ୍ରଣାମ କଲେ ।



# ଅଧିକ !

ରାମପୁର ଗ୍ରାମରେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଗୋଟିଏ ସୁନ୍ଦର ମନ୍ଦିର ଥିଲା । କାଳକ୍ରମେ ସେ ମନ୍ଦିର ଜୀର୍ଣ୍ଣ ହୋଇ ଯାଇଥାଏ । ତାକୁ ମରାମତି କରିବାର ପ୍ରସ୍ତାବ ହେଲା । ଗ୍ରାମର ନେତା ଗୋବିନ୍ଦ ଦାସ କହିଲେ, "ଆମ ଗାଁରେ ଦୁଇଜଣ ବିଶିଷ୍ଟ ଗାୟକ ଅଛନ୍ତି । ସେମାନଙ୍କୁ ନେଇ ଗୋଟିଏ ସଙ୍ଗୀତ ସଭାର ବ୍ୟବସ୍ଥା କରିବା । ଆଖପାଖର ସବୁ ବିଶିଷ୍ଟ ଲୋକଙ୍କୁ ନିମନ୍ତ୍ରଣ କରାଯିବ । ସେମାନେ ଗୀତ ଶୁଣିବା ଉପଲକ୍ଷ୍ୟରେ ମନ୍ଦିର ପାଇଁ ଚନ୍ଦା ଦେବେ ।"

ସେହି ଅନୁସାରେ ଆୟୋଜନ ହେଲା । ଗାୟକ ପ୍ରଭାତଙ୍କୁ ଗୋବିନ୍ଦବାବୁ ପଚାରିଲେ, "ଗୋଟାଏ ଭଲ କାମ ପାଇଁ ତମକୁ ଗୀତ ବୋଲିବାକୁ ହେଲେ ତମେ କେତେ ଟଙ୍କା ନେବ ?"

"ଶହେଟଙ୍କା ଦେଲେ ଚଳିବ ।" ପ୍ରଭାତ କହିଲେ । ଗୋବିନ୍ଦବାବୁ ଅନ୍ୟ ଗାୟକ ଚନ୍ଦ୍ରଶେଖରଙ୍କୁ କହିଲେ ଯେ ଗୋଟିଏ ସଙ୍ଗୀତ ସଭା ହେବ ଓ ସେଥିପାଇଁ ପ୍ରଭାତ ଶହେଟଙ୍କା ନେଇ ଗୀତ ବୋଲିବେ । ତାଙ୍କୁ ବି ସେଇଆ କରିବାକୁ ହେବ ।

ଚନ୍ଦ୍ରଶେଖର ଠେକ୍‌ଠୋକ୍ କହିଲେ, "ପ୍ରଭାତ ଯଦି ଶହେଟଙ୍କା ନେବ, ତେବେ ମୋତେ ତାଠୁଁ ଅନ୍ତତଃ ଟଙ୍କାଟିଏ ଅଧିକ ମିଳିବା ଆବଶ୍ୟକ !"

ଗୋବିନ୍ଦବାବୁ ରାଜି ହେଲେ । ସଭା ଶେଷରେ ସେ ଘୋଷଣା କଲେ, "ଚନ୍ଦ୍ରଶେଖରଙ୍କ କଥା ଅନୁସାରେ ପ୍ରଭାତଙ୍କୁ ଯାହା ଦିଆହେବ, ତାଙ୍କୁ ତା'ଠାରୁ ଟଙ୍କାଟିଏ ଅଧିକ ଦେବା ଦରକାର । ପ୍ରଭାତ ଏ ଆସରର ଉଦ୍ଦେଶ୍ୟ ଜାଣିବା ପରେ ତାଙ୍କ ପ୍ରାପ୍ୟ ଶହେଟଙ୍କା ନେଇ ନାହାନ୍ତି । ଅର୍ଥାତ୍ ସେ ଶୂନ୍ୟ ନେଲେ । ଶୂନ୍ୟଠୁଁ ଅଧିକ ଟଙ୍କାଏ ଅର୍ଥ ଟଙ୍କାଏ । ତାହାହିଁ ଚନ୍ଦ୍ରଶେଖରଙ୍କୁ ଦେଲୁଁ !"






ନର୍ମଦା ନଦୀ ତୀରରେ ଅବସ୍ଥିତ ଥିଲ ଧବଳଗିରି ରାଜ୍ୟ । ସେ ଅନେକ ପୂର୍ବ କାଳର କଥା । ସେତେବେଳେ ସେ ରାଜ୍ୟ ଶାସନ କରୁଥିଲେ ରାଜା ତାରକେଶ୍ୱର । ତାଙ୍କର ଥିଲେ ଦୁଇ ପୁଅ—ଶୂରସେନ ଓ ଚନ୍ଦ୍ରସେନ । ବଡ଼ ଶୂରସେନଙ୍କ ବୟସ ପଚିଶ; ସାନ ଚନ୍ଦ୍ରସେନଙ୍କ ବୟସ ଅଠର ।

ଦିନେ ସକାଳେ ଦୁଇ ରାଜପୁତ୍ର ବଣ ଭିତରକୁ ଶୀକାର ପାଇଁ ବାହାରିଗଲେ । ବଣ ଭିତରେ ପଲେ ହରିଣ ସେମାନଙ୍କ ଆଖିରେ ପଡ଼ିଲେ । ଘୋଡ଼ା ଉପରେ ସବାର୍ ହୋଇ ଦୁଇ ରାଜପୁତ୍ର ସେ ହରିଣ ଦଳର ଅନୁଧାବନ କଲେ । ସେମାନେ ତୀବ୍ର ଗତିରେ ଏତେ ଆଗକୁ ଚାଲିଗଲେ ଯେ ସେମାନଙ୍କ ଅନୁଚରମାନେ ଅନେକ ପଛରେ ପଡ଼ି ରହିଲେ ।

ହଠାତ୍ ସେମାନେ ଗୋଟାଏ ଭୀଷଣ ଗର୍ଜନ ଶୁଣିଲେ । ଧନୁତୀର ଯୋଦ୍ଧା ସେମାନେ ଆତ୍ମରକ୍ଷା ତଥା ଆକ୍ରମଣ ସକାଶେ ପ୍ରସ୍ତୁତ ହୋଇଗଲେ । ଆଖି ପିଛୁଳାକେ ଦୁଇ ସିଂହ ବୁଦା ଭିତରୁ ବାହାରି ପଡି ସେମାନଙ୍କୁ ଆକ୍ରମଣ କଲେ । ଘୋଡ଼ା ଦୁଇଟି ଚର୍‌କି ଯାଇ ବୁଲି ପଡି ଦୌଡିବାକୁ ଲାଗିଲେ । ସେମାନଙ୍କୁ ଅକ୍ତିଆରରେ ରଖିବା ସହଜ ନଥିଲ ।

ବେଶ୍ କିଛି ଦୂର ସେମିତି ଯିବା ପରେ ରାଜକୁମାର ଚନ୍ଦ୍ରସେନ ନିଜ ଘୋଡ଼ାର ଲଗାମ୍ ଟାଣିଲେ । କିନ୍ତୁ ଘୋଡ଼ା ଅଟକିଲ ନାହିଁ । ତୀର ଗତିରେ ଛୁଟିବାକୁ ଲାଗିଲ ।

ନୂତନ ଧାରାବାହିକ ଦୀର୍ଘ କାହାଣୀର ଆରମ୍ଭ



ଅନେକ ଦୂର ଯାଇ ଗୋଟାଏ ପାହାଡ଼ିଆ ସ୍ଥାନରେ ସେ ଅଟକିଲା। ସେତେବେଳେ ତା' ମୁହଁରୁ ଫେଣ ବାହାରୁଥାଏ। ତଳେ ପଡ଼ିଯାଇ ସେ ଶେଷ ନିଃଶ୍ୱାସ ତ୍ୟାଗ କଲା।

ଜୟସେନ ଭୀଷଣ କ୍ଳାନ୍ତ ହୋଇ ତଳେ ବସି ପଡ଼ିଲେ ଓ ଏଣେ ତେଣେ ଅନାଇଲେ। ବଡ଼ ଭାଇଙ୍କୁ କାହିଁ କେଣେ ଦେଖିଲେ ନାହିଁ। ସେ ବୁଝିପାରିଲେ ଯେ ଶୂରସେନ୍ ଓ ଅନୁଚରମାନଙ୍କଠାରୁ ସେ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି।

ସେ ଅଞ୍ଚଳରେ ଘନ ବଣ ଯୋଗୁଁ ସୂର୍ଯ୍ୟ କିରଣ ପ୍ରାୟ ତଳେ ପଡ଼ୁ ନଥାଏ। ଗଛ ଡାଳମାନଙ୍କରେ ମାଙ୍କଡ଼ପଲ ଡିଆଁ ଡେଇଁ କରୁଥିଲେ। ଚତୁର୍ଦ୍ଦିଗରୁ ପକ୍ଷୀମାନଙ୍କ କଳରବ ଶୁଭୁଥାଏ। ବଡ଼ ବଡ଼ ସାପ ବି ଏଣେ ତେଣେ ଦେଖିବାକୁ ମିଳୁଥିଲେ।

ଜୟସେନ ଭୟଭୀତ ହୋଇ ଠିଆ ହୋଇ ରହିଥାନ୍ତି। ଖାଲି ଯେ ନିଜ ଲୋକଙ୍କଠୁଁ ସେ ଦୂରେଇ ଆସିଥିଲେ, ସେତିକି ନୁହେଁ, ଆଖପାଖରେ କୌଣସି ଗାଁ ଗଣ୍ଡା ନାହିଁ ବୋଲି ମଧ୍ୟ ସେ ବୁଝି ପାରିଲେ।

ଘୋଡ଼ା ତ ମରି ଯାଇଥାଏ। ବର୍ତ୍ତମାନ ନିଜ ନଗରକୁ ଚାଲି ଚାଲି ଯିବା ଛଡ଼ା ଅନ୍ୟ ଉପାୟ ନାହିଁ। କିନ୍ତୁ ନଗର କେଉଁ ଦିଗରେ, ତାହା ସେ ଠଉରାଇ ପାରୁ ନଥାନ୍ତି।

ସେ ଅଳ୍ପଦୂର ଯାଇ ଗୋଟିଏ ପାହାଡ଼ ଦେଖିଲେ। ପାହାଡ଼ ଉପରୁ ଗୋଟିଏ ସ୍ରୋତ ପ୍ରପାତ ତଳେ ଆସି ଶବ୍ଦ କରି ପଡ଼ୁଥାଏ। ଝରଣାର ସ୍ୱଚ୍ଛ ଜଳ ଦେଖି ସେ ଦୌଡ଼ିଗଲେ ଓ ସେ ଶୀତଳ ପାଣି ପିଇ ତୃଷା ମେଣ୍ଟାଇଲେ।

ପାଣି ପିଇସାରି ସେ ବିଶ୍ରାମ କଲେ ଓ ନିଜର କର୍ତ୍ତବ୍ୟ କ'ଣ, ସେ ବିଷୟ ଚିନ୍ତା କଲେ। ସେ ଆଶା କରୁଥିଲେ କି ତାଙ୍କ ବଡ଼ ଭାଇ ମଧ୍ୟ ସିଂହ କବଳରୁ ଖସିଯାଇଛନ୍ତି। ସେ ବି ହୁଏତ ଏହି ବଣ ଭିତରେ ଆସି ବାଟ ନପାଇ ଏଣେ ତେଣେ ବୁଲୁଥିବେ। ଅନ୍ତତଃ ଦୁଇ ଭାଇ ଏକାଠି ହେଲେ ଦୁହିଁଙ୍କର ମନୋବଳ ଫେରି ଆସିବ ଓ ଦୁହେଁ ବିପଦ ସମୟରେ ଦୁହିଁଙ୍କୁ ରକ୍ଷା କରିବେ।




ଏକଥା ମନକୁ ଆସିବା ମାତ୍ରେ ସେ ଉଠି ଠିଆ ହେଲେ ଓ ପାଟି କରି ଡାକିଲେ, "ଭାଇ ଶୂରସେନ ! ଭାଇ ଶୂରସେନ ! ତୁମେ କେଉଁଠି ଅଛ ? ମୁଁ ତୁମ ସାନଭାଇ ଚନ୍ଦସେନ ତୁମକୁ ଡାକୁଛି ।" ଏହାପରେ ସେ ବାରମ୍ବାର ସବୁ ଦିଗକୁ ମୁହଁ କରି ଚିତ୍କାର କରି ଡାକିଲେ ।

କିନ୍ତୁ ତାଙ୍କ ଡାକ ପାହାଡ଼ ଗାତରେ ବାରମ୍ବାର ପ୍ରତିଧ୍ୱନିତ ହେଲା ସିନା ହେଲେ ଆଉ କିଛି ଫଳ ହେଲା ନାହିଁ । ସଙ୍ଗେ ସଙ୍ଗେ ଜଳ ପ୍ରବାହର ଅନ୍ୟ ଦିଗରେ ଥିବା ଗୋଟିଏ ଗୁଂଫା ଭିତରୁ କେହି କହିଲା, "କିଏ ତମେ ? ମୁଁ ଏହା ପୂର୍ବରୁ ଏ ମୂଲକରେ କୌଣସି ମଣିଷର କଣ୍ଠ ଶୁଣି ନାହିଁ । ଆଜି ପ୍ରଥମ କରି ଶୁଣୁଛି । ମନେହୁଏ ତମ ଭାଗ୍ୟ ଭଲ । ଆସ, ଏଆଡ଼େ ଶୀଘ୍ର ବାରି ମୋ ନିକଟକୁ ଆସ ।"

ଚନ୍ଦସେନ ଚମକି ଉଠିଲେ । ସାହସ ସଞ୍ଚୟ କରି ସେ ଉଚ୍ଚ କଣ୍ଠରେ ପଚାରିଲେ, "ତମେ କିଏ ? ଖାଣ୍ଟି ରାକ୍ଷସ ନା ନରମାଂସ ଭକ୍ଷୀ କୌଣସି କ୍ରୂର ବନ୍ୟ ନର-ରାକ୍ଷସ ? ବାହାରି ଆସ । ମୋ ତରବାରି ଅନେକ ସମୟ ହେଲା କାମ କରିନାହିଁ ।"

ଚନ୍ଦସେନଙ୍କ କଥା ଶେଷ ନ ହେଉଣୁ ଗୁଂଫା ଭିତରୁ ବିଚିତ୍ର ମଧୁର ହସ ଶୁଭିଲା । ତା'ପରେ ସେ ଗୁଂଫାବାସୀ ପୁଣି କହିଲା, "ପୁଅ ! ତୁ ବେଶ୍ ସାହସୀ । ମୁଁ ତୋ ଭଳି ଜଣେ ଲୋକର ପ୍ରତୀକ୍ଷାରେ ଥିଲି । ମୁଁ ରାକ୍ଷସ ନୁହେଁ କି ନର-ରାକ୍ଷସ ନୁହେଁ କି କୌଣସି ସାଧାରଣ ମଣିଷ ବି ନୁହେଁ । ମୁଁ ଜଣେ ସାଧକ ପୁରୁଷ । କଠୋର ତପସ୍ୟା କରି କିଛି ସିଦ୍ଧି ପାଇଛି । ତୋତେ କିଛି ମୂଲ୍ୟବାନ ଜିନିଷ ଦେବି । ତୋର ସୌଭାଗ୍ୟ ତୁ ଆସି ଏଠି ପହଞ୍ଚି ପାରିଛୁ । ଆ, ମୋଠୁ ଆସି ଏ ଜିନିଷ ନେଇ ଯା' ।"

ଚନ୍ଦସେନ ଭାବିଲେ, "ଗୁମ୍ଫା ଭିତରେ ଯଦି ସତରେ ରାକ୍ଷସ ଥିବ, ତେବେ ତା'କୁ ଏଡ଼ାଇ ପଳାଇବା ସହଜ ହେବ ନାହିଁ । ସେମିତି ହେଲେ ବି ତା' ସହ ଲଢ଼େଇ କରିବାକୁ ହେବ । ଆଉ ଯଦି ସତରେ ଲୋକଟି ସିଦ୍ଧ



ପୁରୁଷ ହୋଇଥିବ, ତେବେ ତ ମୋର ଉପକାରହିଁ ହେବ । ଅତଏବ ବୀର ଭଳି ମୁଁ ତାଙ୍କୁ ସାମ୍ନା ନ କରିବି କାହିଁକି ?"

ଚନ୍ଦସେନ ତରବାରି ବାହାର କରି ଧରିଲେ ଓ ଧୀରେ ଧୀରେ ପାଣି ଭିତର ଦେଇ ଯାଇ ଅନ୍ୟ ତୀରରେ ପହଞ୍ଚିଲେ । ସେ ପଟେ ଅନେକ ଗୁଡ଼ିଏ ଗୁଂଫା । ସେ ଗୋଟାଏ ପରେ ଗୋଟାଏ ଗୁଂଫା ଭିତରକୁ ଉଙ୍କିମାରି ଦେଖୁଥାନ୍ତି । କିନ୍ତୁ ବେଶି ସମୟ ଖୋଜାଖୋଜି କରିବାକୁ ପଡିଲା ନାହିଁ । ଗୋଟାଏ ଗୁଂଫା ଭିତରୁ ସେ ଡାକରି ପାଇଲେ, "ଭୟ ନାହିଁ ଯୁବକ ! ମୋ ପାଖକୁ ସିଧା ଚାଲି ଆ ।"

ସେ ଅପରିଚିତ କଣ୍ଠସ୍ୱର ଆସୁଥିବା ଗୁଂଫା ପାଖରେ ଚନ୍ଦସେନ ଯାଇ ଯଥାଶୀଘ୍ର ପହଞ୍ଚିଗଲେ ଓ ଭିତରକୁ ଦୃଷ୍ଟିପାତ କଲେ । ଦେଖିଲେ ଭିତରେ ଜଣେ ସନ୍ନ୍ୟାସୀ ବସିଛନ୍ତି । ତାଙ୍କ ଦାଢୀ ଓ ଜଟା ଧୂଷର ଧଳା । ଖଣ୍ଡିଏ ପଥର ଉପରେ ସେ ବସିଥିଲେ ।

ଗୁଂଫା ଉପରେ କେଉଁଠି ଗୋଟିଏ ଛିଦ୍ର ଥିଲା । ତହିଁ ଭିତରଦେଇ ସୂର୍ଯ୍ୟ କିରଣ ଆସି ଗୁଂଫା ଭିତରର ଅନ୍ଧକାରକୁ ଦୂର କରୁଥାଏ ।

ସେ ତେଜସ୍ୱୀ ସନ୍ନ୍ୟାସୀଙ୍କୁ ଦେଖି ନିଜ ଆଚରଣ ଯୋଗୁଁ ଚନ୍ଦସେନ ଅନୁତାପ କଲେ । ସେ ତରବାରି କୋଷରେ ପୂରାଇ ସନ୍ନ୍ୟାସୀଙ୍କ ପାଖକୁ ଯାଇ ତାଙ୍କୁ ପ୍ରଣାମ କଲେ ଓ ବିନମ୍ର ପୂର୍ବକ କହିଲେ, "ମହାଶୟ, ମୋ ଧୃଷ୍ଟତା ମାର୍ଜନା କରନ୍ତୁ ।"

"ଯୁବକ, ତୁ ଉତ୍ତମ କ୍ଷତ୍ରୀୟ ବୋଲି ମୋର ବିଶ୍ୱାସ । ମୁଁ ଏଠାରେ ଷାଠିଏ ବର୍ଷ କାଳ ତପସ୍ୟା କରିଛି । ବର୍ତ୍ତମାନ ମୋର ମୃତ୍ୟୁ ସମୟ ଆସିଗଲାଣି । ତପସ୍ୟାରୁ ଯେଉଁ ଫଳ ପାଇଛି, ତାହାକୁ ଉପଯୋଗ କଲାଭଳି ବଳ ଆଉ ମୋର ନାହିଁ ।" ଏହା କହି ସନ୍ନ୍ୟାସୀ ନିଜ ପାଖରେ ଥିବା ବାଉଁଶ ପେଡ଼ିଟିଏ ଚନ୍ଦସେନଙ୍କୁ ବଢ଼ାଇ ଦେଲେ ।

ଚନ୍ଦସେନ ସେ ପେଡ଼ି ଭିତରେ କ'ଣ ଅଛି ଦେଖିବାକୁ ଉତ୍ସୁକ ହୋଇ ତାହା ଖୋଲିବାକୁ ଚେଷ୍ଟା କରିବାରୁ ସନ୍ନ୍ୟାସୀ କହିଲେ, "ବାପା,

ବ୍ୟସ୍ତ ହୁଅନା । ଏ ସ୍ଥାନରେ ଏହା ଖୋଲିବା ଉଚିତ ନୁହେଁ । ଯେଉଁଠାରେ ତୁ ତୋ'ର ସ୍ଥାୟୀ ବାସସ୍ଥାନ ବନାଇବୁ, ସେଇଠାରେ ଏହାକୁ ଖୋଲିବୁ । ମୋ କଥା ମନେ ରଖିବୁ । ଲୋକେ ଧୈର୍ଯ୍ୟ ଅଭାବରୁ ଅନେକ ସମୟରେ ଅନେକ ପ୍ରକାର ବିପଦରେ ପଡ଼ନ୍ତି । ସାବଧାନ ।"



ଚନ୍ଦସେନ ସନ୍ନ୍ୟାସୀଙ୍କୁ ପ୍ରଣାମ କରି କହିଲେ, "ମହାତ୍ମା ! ଆପଣଙ୍କର ଏ ଦୟା ନିମନ୍ତେ ମୁଁ ବହୁତ କୃତଜ୍ଞ । ମୋ ଦ୍ୱାରା ଯଦି କୌଣସି ସେବା ହୋଇପାରିବ, ମୋତେ ନିର୍ଦ୍ଦେଶ ଦିଅନ୍ତୁ । ମୁଁ ଆନନ୍ଦରେ ତାହା କରିବି ।"

"ବାପା ! ମୋର ସମୟ ଶେଷ ହୋଇ ଆସିଲଣି । କୌଣସି ସେବା ଆଉ ମୋର ଲୋଡ଼ା ନାହିଁ । ତେବେ ତୁ ମୋର ଗୋଟାଏ ଉପକାର କରି ପାରିବୁ । ଏ ଗୁଂଫାରୁ ବାହାରି ଯିବା ପରେ ଗୁଂଫା ଦ୍ୱାରର ପୂର୍ବ ଦିଗରେ ଗୋଟିଏ ତ୍ରିକୋଣାକୃତି ଶିଳାଖଣ୍ଡ ଦେଖିବୁ । ତାହା ତଳେ ଆଘାତ କରିବୁ । ସେତକ ମୋର ଯଥେଷ୍ଟ ପ୍ରତ୍ୟୁପକାର ହେବ ।" ସନ୍ନ୍ୟାସୀ କହିଲେ ।

ଚନ୍ଦସେନ ଗୁଂଫା ବାହାରକୁ ଆସିଲେ । ସନ୍ନ୍ୟାସୀର ବିବରଣୀ ଅନୁସାରେ ସେ ଗୁଂଫାର ପୂର୍ବ ଦିଗରେ ଗୋଟିଏ ତ୍ରିକୋଣାକୃତି ଶିଳାଖଣ୍ଡ ଦେଖିଲେ । ସେ ତା' ତଳେ ଖଣ୍ଡିଏ ପଥର ବାଡ଼େଇ ଆଘାତ ଦେଲେ ।

ତତ୍‌କ୍ଷଣାତ୍ ଭୀଷଣ ଶବ୍ଦ ହେଲା । ସାରା ପର୍ବତ ସେଥିରେ କମ୍ପି ଉଠିଲା । ସେ ଗୁଂଫା ଗୋଟାଏ ବିସ୍ଫୋରଣରେ ଧୂଳିସାତ୍ ହୋଇଗଲା ।

ଚନ୍ଦସେନ ଆଶ୍ଚର୍ଯ୍ୟ ହୋଇ ଅନାଇ ଦେଖିଲେ, ଗୁଂଫାର ଅସ୍ତିତ୍ୱ ନାହିଁ । ସେ କିଛି ସମୟ ଠିଆ ହୋଇ ରହି ତା'ପରେ ପୁଣି ବାଟଚଲା ଆରମ୍ଭ କଲେ । ସେ ପ୍ରବାହ ପାରି ହୋଇ ବଣ ଭିତର ଦେଇ ଅଗ୍ରସର ହେଲେ । ପଥ ଦୁର୍ଗମ । ଯେଉଁଠି ଗଛଲତା କମ୍ ସେ ସେହି ବାଟଦେଇ ଆଗକୁ ଗଳିଲେ । ଥରେ ଥରେ କଣ୍ଟା ବୁଦା ଓ ସାପମାନଙ୍କୁ ଏଡ଼ାଇ

ହାତେ ଦୁଇହାତ ଆଗକୁ ଯିବାର ଜାଠିକର ହେଉଥାଏ ।

ସୂର୍ଯ୍ୟ ଡୁବିବାକୁ ବେଶି ବିଳମ୍ବ ନଥାଏ । ଚନ୍ଦ୍ରସେନଙ୍କୁ ଭୋକ ବି ଲାଗୁଥାଏ ।

ସେ ଆହୁରି କିଛି ଦୂର ଅଗ୍ରସର ହୋଇ ଦେଖିଲେ ଗୋଟିଏ ପଡ଼ିଆ ଭଳି ସ୍ଥାନ ଅଛି । ସେଠି ବେଶି ଗଛଲତା ନାହିଁ । ହଠାତ୍ ସେ ହାତରେ ଧରିଥିବା ସେ ପେଟି ଭିତରେ କ'ଣ ଅଛି ତାହା ଜାଣିବାକୁ ତାଙ୍କ ଆଗ୍ରହ ପ୍ରବଳ ହେଲା । ସେ ସନ୍ନ୍ୟାସୀ ଦେଇଥିବା ସତର୍କବାଣୀ ପୁରାପୁରି ଭୁଲି ଯାଇଥାନ୍ତି ।

ସେ ଯେମିତି ପେଟି ଖୋଲି ତହିଁ ଭିତରକୁ ଅନାଇଛନ୍ତି, ତାଙ୍କ ଆଖି ଆଗରେ କିଛି ଏପରି ଭାବରେ ଝଲସି ଉଠିଲା ଯେ ସେ ଆଖି ବନ୍ଦ କଲେ । ମୁହୂର୍ତ୍ତକ ପରେ ଆଖି ଖୋଲି ସେ ଯାହା ଦେଖିଲେ, ସେଥିରେ ତାଙ୍କ ବିସ୍ମୟର ସୀମା ରହିଲା ନାହିଁ ।

ସେ ଦେଖିଲେ ତାଙ୍କ ଆଗରେ ଗୋଟିଏ ସୁରମ୍ୟ ଅଟ୍ଟାଳିକା ଠିଆ ହୋଇଛି ! ସେ ନିର୍ନିମେଷ ନୟନରେ ଅନେକ ସମୟ ଯାଏ ତା' ଆଡ଼େ ଅନାଇ ରହିଲେ । ତା'ପରେ ସନ୍ନ୍ୟାସୀଙ୍କ ଚେତାବନୀ ବିଷୟ ତାଙ୍କର ମନେ ପଡ଼ିଲା । "ବାସ୍ତବିକ, ଏ ସୁରମ୍ୟ ଅଟ୍ଟାଳିକା ଏ ଜନହୀନ ଅଞ୍ଚଳରେ ଥାଇ ଲାଭ କ'ଣ ? ମୁଁ ସିନା ଧବଳଗିରି ନଗରରେ ପହଞ୍ଚି ଏ ପେଟି ଖୋଲିଥାନ୍ତି ! ସେଠାରେ ଏ ଅଟ୍ଟାଳିକା କେଡ଼େ ଶୋଭା ପାଇଥାନ୍ତା ! ମୋ ଧୈର୍ଯ୍ୟ-ହୀନତା ଓ ବୋକାମି ଯୋଗୁଁ ସନ୍ନ୍ୟାସୀଙ୍କ



ପାଖରୁ ପାଇଥିବା ଅପୂର୍ବ ସିଦ୍ଧି ଯାହା ନଷ୍ଟ କରିଦେଲି !"

ଚନ୍ଦସେନ ଏହିସବୁ ଭାବୁଛନ୍ତି, ହଠାତ୍ ହୁ ହୁ ଶବ୍ଦ ଶୁଭିଲା । ଗଛଲତା ଦୋହଲିବାକୁ ଲାଗିଲା । ସତେ ଅବା ତୋଫାନ ଆସିଛି । ତା'ପରେ ସେ ଦେଖିଲେ, ଗଛଲତା ଗହଳରୁ ବାହାରି ଆସିଲା ଗୋଟାଏ ରାକ୍ଷସ । ଚନ୍ଦସେନ ତରବାରି ବାହାର କରି ତାକୁ ସାମ୍ନା କରିବା ନିମନ୍ତେ ପ୍ରସ୍ତୁତ ହୋଇ ରହିଲେ ।

ରାକ୍ଷସ ଅଟ୍ଟହାସ୍ୟ କରୁଁ କରୁଁ ତାଙ୍କ ଆଗକୁ ଆସି କହିଲା, "ଦୁଃସାହସ ତ କମ୍ ନୁହେଁ ! ମୋତେ ଦେଖି ଲୋକେ ଛୁଟିପିଟି ହୋଇ ପଳାନ୍ତି; ତୁ ତରବାରି ବାହାର କରୁଛୁ ! ଆଜଯାଏ ମୁଁ ଏଭଳି ମଣିଷଟାଏ ଦେଖି ନଥିଲି ।"

ଏହା କହି ରାକ୍ଷସ ପଛକୁ ବୁଲିପଡ଼ି ଦେଖିଲା ଓ ପଚାରିଲା, "କହ, ଏ ମହଲ୍ ତୁ ବନାଇଛୁ ?"

"ହଁ । ମୁଁ ବନାଇଛି ।" ଅବିଚଳିତ କଣ୍ଠରେ ଚନ୍ଦସେନ ଉତ୍ତର ଦେଲେ ।

ରାକ୍ଷସ ପୁଣି ଅଟ୍ଟହାସ୍ୟ କଲା । ଏଥର ତା' ହସ ସହିତ କ୍ରୋଧ ମିଶିଥାଏ । "ହଇରେ ଟୋକା ! ଏ ବଣ କ'ଣ ତୋ ବାପା ଜେଜେବାପା ବସାଇଥିଲେ ଯେ ତୁ ଏଠି ଘର ତୋଳି ପକାଇଲୁ ? ଏ ସ୍ଥାନ ମୋର—ରାକ୍ଷସ ଉଗ୍ରାକ୍ଷର । ମୋ ବିନା ଅନୁମତିରେ ମହଲ ବନାଇବାକୁ ତୁ କିଏ ? ଏହିକ୍ଷଣି ତୋତେ ଓ ତୋ ଘରକୁ ଉଠାଇ ଢେଲା ଭଳି ପାହାଡ଼ ସେପାରିକୁ ଫୋପାଡ଼ି ଦେଇ ପାରେଁ ବୋଲି



ଜାଣିଛୁ ?" ଏହା କହି ରାକ୍ଷସ ଚନ୍ଦ୍ରସେନଙ୍କୁ ଉଠାଇ ନେବା ନିମନ୍ତେ ଅଗ୍ରସର ହେଲା ।

ଚନ୍ଦ୍ରସେନ ପଛକୁ ହଟିଗଲେ ଓ କହିଲେ, "ଉଗ୍ରାକ୍ଷ, ଏତେ ଅଧୈର୍ଯ୍ୟ ହେଉଛ କାହିଁକି ? ମୁଁ ମହଲ୍ ବନାଇବା ଦ୍ୱାରା ତମର କ୍ଷତି କ'ଣ ହେଲା ? ଯଦି କହିବ, ତେବେ ମୁଁ ମହଲ୍ ଛାଡି ଚାଲିଯିବି । ଏଥିରେ ଏଡ଼େ ରାଗିବାର କ'ଣ ଅଛି ?"

"ତୁ ଛୋଟା ଘର ଧୂର୍ତ୍ତ, ନା ? ମୋ ବଣରେ ମୋତେ ଖାତିର୍ ନକରି ଯାହା ଇଚ୍ଛା ତାହା କରିବୁ, ଆଉ ମୁଁ ତୋତେ ନ ମାରି ଛାଡ଼ି ଦେବି ? ଆଚ୍ଛା, ଯଦି ମୋର ଗୋଟାଏ ସର୍ତ୍ତ ମାନିବୁ, ତେବେ ଛାଡ଼ିଦେବି ।" ଉଗ୍ରାକ୍ଷ କହିଲା ।

"କି ସର୍ତ୍ତ ?" ଚନ୍ଦ୍ରସେନ ପଚାରିଲେ ।

"ତୁ ଏ ମହଲରେ ସୁଖରେ ରହି । ମୁଁ ବାଧା ଦେବି ନାହିଁ । କିନ୍ତୁ ତୋ ବଡ଼ ପୁଅକୁ ଯେତେବେଳେ ଆସି ଅଠର ବର୍ଷ ବୟସ ହେବ, ତୁ ତାକୁ ମୋତେ ଦେଇଦେବୁ । ଏହାହିଁ ମୋର ସର୍ତ୍ତ । ରାଜି ?"

ରାକ୍ଷସର ଏ ସର୍ତ୍ତ ଚନ୍ଦ୍ରସେନଙ୍କୁ ବଡ ବିଚିତ୍ର ଲାଗିଲା । ଏବେ ସୁଦ୍ଧା ତାଙ୍କର ବିବାହ ହୋଇ ନାହିଁ । ପୁଣି ପୁଅକୁ ଅଠର ବର୍ଷ ହେବା ଯାଏ ରାକ୍ଷସ ଏ ସର୍ତ୍ତ ମନେ ରଖିବ ? ସେ ଯାହା ହେଉ, ଆପାତତଃ ବିପଦରୁ ମୁକୁଳି-ଯିବା ସୁବିଧାଜନକ ହେବ ବୋଲି ରାକ୍ଷସର ସର୍ତ୍ତ ସେ ମାନିନେବାକୁ ଠିକ୍ କଲେ ।

"ରାକ୍ଷସ ଉଗ୍ରାକ୍ଷ ! ତମ ସର୍ତ୍ତ ମୁଁ ମାନିନେଲି । ମୋ ଜ୍ୟେଷ୍ଠ ପୁତ୍ରକୁ ଅଠର ବର୍ଷ ବୟସ ହେଲେ ତାକୁ ତମକୁ ସମର୍ପି ଦେବି । ତମେ ମୋତେ ବିଶ୍ୱାସ କର ।" ଚନ୍ଦ୍ରସେନ କହିଲେ ।

ରାକ୍ଷସ ଖୁସି ହେଲା । "ବେଶ୍ । ତମକୁ ପ୍ରାଣଦାନ ଦେଲି । ସାବଧାନ ! ପ୍ରତିଶ୍ରୁତି ରକ୍ଷା କରିବାକୁ ହେବ !" ରାକ୍ଷସ ଏହା କହି ସେଠାରୁ ଚାଲିଗଲା । (କ୍ରମଶଃ)






# ଅସନ୍ତୋଷର ରହସ୍ୟ

ନିଶା ଗରଜୁଥାଏ । ଝୁଡ଼ାଲୁ ଝୁଡ଼ା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରିମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

ତଥାପି ଚଳେମାନ ଦ୍ୱିଧା ନକରି ରାଜା ବିକ୍ରମାର୍କ ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ମୁଁ ଜାଣେନା ତମେ ନିଜ ଇଚ୍ଛାରେ ଏ ଭୟାବହ ରାତରେ ଏଭଳି ବିପଜ୍ଜନକ କାମରେ ହାତ ଦେଇଛ, ନା କୌଣସି ମିତ୍ରର ପ୍ରରୋଚନାରେ

## ବେତାଳ କଥା



ଏ କାମ ହାତକୁ ନେଇଛ । ମିଛ କଥାକୁ ସମ୍ମାନ ଦେବାକୁ ଯାଇ ଅନେକ ସମୟରେ ଲୋକେ ନିଜ ସିଦ୍ଧାନ୍ତ ବଦଳାଇବାର ଦେଖାଯାଏ । ଗୋଟିଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ । ଶୁଣିଲେ ଶ୍ରମହାର ଲାଘବ ମନେ ହେବ ।"

ବେତାଳ କହିଲା : କାଞ୍ଚନପୁର ନଗରରେ ସେତେବେଳେ ରାଜୁତି କରୁଥିଲେ ରାଜା ଶଶାଙ୍କ । ତାଙ୍କ ରାଣୀ ସୁନନ୍ଦା ଥିଲେ ଅତ୍ୟନ୍ତ ରୂପବତୀ । ରାଜା ରାଣୀଙ୍କର ସମସ୍ତ ଇଚ୍ଛା ପୂରଣ କରିବାକୁ ଚେଷ୍ଟା କରୁଥିଲେ । ଭଲ ବେଶ ପୋଷାକ ଓ ଅଳଙ୍କାର ପ୍ରତି ରାଣୀଙ୍କର ଆକର୍ଷଣ ଥିଲା । ତେଣୁ ରାଜା ଜଣେ କୁଶଳୀ ବୁଣାଳୀ ଓ ଜଣେ ଦକ୍ଷ ବଣିଆକୁ ରାଜଦରବାରରେ ରଖିଥିଲେ । ସେ ଦୁହିଙ୍କ ଭଳି ଶିଳ୍ପୀ କାଞ୍ଚନପୁର କାହିଁକି, ଆଖପାଖର ଆଉ କୌଣସି ରାଜ୍ୟରେ ବି ନଥିଲେ ।

ପ୍ରତିବର୍ଷ ରାଣୀଙ୍କ ଜନ୍ମଦିନ ଖୁବ୍ ଜାକଜମାକରେ ପାଳନ କରାହେଉଥାଏ । ଉଭୟ ଶିଳ୍ପୀ ଜନ୍ମଦିନର ଯଥେଷ୍ଟ ପୂର୍ବରୁ ରାଣୀଙ୍କୁ ନୂଆ ଶାଢ଼ୀ ଓ ନୂଆ ଅଳଙ୍କାରର ନକ୍ସା ଦେଖାଉଥିଲେ । ସେସବୁ ଏତେ ଭଲ ହେଉଥାଏ ଯେ ରାଣୀ ସଙ୍ଗେ ସଙ୍ଗେ ସେସବୁ ମଞ୍ଜୁର କରିଦେଉଥାନ୍ତି । ଜନ୍ମଦିନ ପୂର୍ବରୁ ବୁଣାଳୀ ନୂଆ ଶାଢ଼ୀ ଓ ବଣିଆ ନୂଆ ଅଳଙ୍କାରମାନ ପ୍ରସ୍ତୁତ କରି ଦେଉଥାନ୍ତି । ସାଧାରଣତଃ ସେସବୁ ସମସ୍ତଙ୍କ ଦ୍ୱାରା ଉଚ୍ଚ କଣ୍ଠରେ ପ୍ରଶଂସିତ ହେଉଥାଏ ।

ରାଜାଙ୍କର ଜଣେ ବାଲ୍ୟବନ୍ଧୁ ଥିଲେ । ତାଙ୍କ ନାମ ମହେନ୍ଦ୍ର । ରାଜା ଯେତେବେଳେ କୌଣସି ବିଶେଷ କାମ ହାତକୁ ନେଉଥିଲେ ବା କୌଣସି ବିଶେଷ ସିଦ୍ଧାନ୍ତ କାର୍ଯ୍ୟକାରୀ କରିବାକୁ ଯାଉଥିଲେ, ସେତେବେଳେ ସେ ମହେନ୍ଦ୍ରଙ୍କୁ ସେକଥା ଜଣାଇ ଦେଉଥିଲେ । ମଜାର କଥା ହେଲା, ମହେନ୍ଦ୍ର ପ୍ରାୟ କୌଣସି କଥାରେ ପାଟି ଫିଟାଉ ନଥାନ୍ତି । ରାଜା ଯାହା କହୁଥାନ୍ତି, ସେ ତାହା ନୀରବରେ ଶୁଣି ଯାଉଥାନ୍ତି ମାତ୍ର ।

ଦିନେ ମନ୍ତ୍ରୀ ରାଜାଙ୍କୁ ପଚାରିଲେ, "ମହାରାଜ, ମୁଁ ଗୋଟାଏ ବିଷୟରେ ଅନେକ

ସମୟରେ ଆଶ୍ଚର୍ଯ୍ୟ ହୁଏଁ । ଆପଣ ସବୁ ଗୁପ୍ତଚର କଥା ମହେନ୍ଦ୍ରଙ୍କୁ କାହିଁକି କହନ୍ତି ? ସେ ତ କେବେ କୌଣସି ପରାମର୍ଶ ଦେବାର ମୁଁ ଦେଖେଁ ନାହିଁ !"

ରାଜା କହିଲେ, "ମହେନ୍ଦ୍ର ମୋର ବାଲ୍ୟବନ୍ଧୁ । ତା' ମନୋଭାବ ମୁଁ ତା' ମୁହଁକୁ ଅନାଇଦେଇ ବୁଝିପାରେଁ । ପ୍ରୟୋଜନ ନ ହେଲେ ସେ କେବେ କଥା କହେ ନାହିଁ । ମୁଁ ତାକୁ ଯାହା କହେଁ, ସେ ଯଦି ସେଥିରେ କିଛି ଭୁଲ ଦେଖନ୍ତା, ତେବେ ନିଶ୍ଚୟ ମୁହଁ ଖୋଲି କହନ୍ତା ।"

ଏହାର କିଛି ଦିନ ପରେ ରାଣୀଙ୍କର ଆସନ୍ତା ଜନ୍ମଦିନ ସକାଶେ ଦୁଇ କାରିଗର ପ୍ରସ୍ତାବିତ ସାଢ଼ୀ ଓ ଅଳଙ୍କାରର ନକ୍ସା ତଥା ନକଲ ନମୁନା ଆଣି ରାଜାଙ୍କୁ ଦେଖାଇଲେ । ରାଜା ସେସବୁ ରାଣୀଙ୍କ ପାଖକୁ ପଠାଇଦେଲେ । କିନ୍ତୁ ତାହା ରାଣୀଙ୍କ ମନଃପୂତ ହେଲା ନାହିଁ । ସେ ତାହା ରାଜାଙ୍କ ପାଖକୁ ଫେରସ୍ତ ପଠାଇଦେଲେ ।

ରାଜା ଦୁଇ କାରିଗରଙ୍କୁ ଡକାଇ ନୂଆ ନମୁନା ପ୍ରସ୍ତୁତ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ । କାରିଗରମାନେ ପୁଣି ଯାହା ପଠାଇଲେ, ତାହା ମଧ୍ୟ ରାଣୀଙ୍କ ମନକୁ ପାଇଲା ନାହିଁ । ରାଜା କାରିଗରମାନଙ୍କୁ ପୁଣି ଥରେ କୌଣସି ନୂଆ ଧରଣର ନକ୍ସା ଅନୁସରଣ କରି ନୂଆ ସାଢ଼ୀ ଓ ଅଳଙ୍କାରର ନମୁନା ପ୍ରସ୍ତୁତ କରିବାକୁ କହିଲେ । କାରିଗରମାନେ ଏଥର ବି ଯାହା ତିଆରି





କଲେ ତାହା ବି ସବୁ ରାଣୀ ନାମଞ୍ଜୁର କରିଦେଲେ ।

ମନ୍ତ୍ରୀ କହିଲେ, "ମହାରାଜ ! ଏହା କାରିଗରମାନଙ୍କ ବୟସର ଦୋଷ ।"

ରାଜା ଦୁଇ କାରିଗରଙ୍କୁ ଡକାଇ ବିରକ୍ତ ହୋଇ କହିଲେ, "ତମ ଦୁହିଁଙ୍କର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶିଳ୍ପ ନିପୁଣତା ହ୍ରାସ ପାଉଛି ବୋଲି ମନେ ହୁଏ । ତମମାନଙ୍କୁ ଦରବାରରେ ରଖି ଲାଭ କ'ଣ ? ତମେମାନେ ବା କ'ଣ କରିବ ! ଏହା ବୟସର ଦୋଷ !" ଦୁଇ କାରିଗର ମୁଣ୍ଡ ତଳକୁ କରି ଚାଲିଗଲେ ।

ସେତିକିବେଳେ ମହେନ୍ଦ୍ର, ରାଜାଙ୍କ ମନ୍ତ୍ରଣା ପ୍ରକୋଷ୍ଠ ପାଖ ଦେଇ ଯାଉଥିଲେ । ସେ ଭିତରକୁ ପଶି ଆସି କହିଲେ, "ରାଜା ! ବୟସର ଦୋଷ ବୋଲି ଆପଣ ଯାହା କହିଲେ, ତାହା ଠିକ୍ । କାରିଗରମାନଙ୍କର ନିପୂଣତା ହ୍ରାସ ହୋଇ ନାହିଁ । ସେମାନଙ୍କୁ ଧମକ ଚମକ ଦେଇ ଲାଭ ନାହିଁ । ସମସ୍ୟାର ଅସଲ କାରଣ ବୁଝିବାକୁ ଚେଷ୍ଟା କରନ୍ତୁ ଓ ଶାନ୍ତ ରହନ୍ତୁ ।"

ରାଜା ବାଲ୍ୟବନ୍ଧୁଙ୍କ କଥା ସସମ୍ମାନେ ଶୁଣିଲେ ଓ ଅନ୍ତଃପୁରକୁ ଯାଇ ରାଣୀଙ୍କୁ ଅବିକଳ ଭାବରେ ତାହା ଶୁଣାଇଲେ ।

ରାଣୀ ଅନେକ ସମୟ ଧରି ସ୍ତବ୍ଧ ହୋଇ ରହିଲେ । ତାଙ୍କ ଆଖି ସଜଳ ହୋଇଗଲା । ସେ କହିଲେ, "ମହାରାଜ ! ମୋର ଭୁଲ ହୋଇଛି । ଆପଣ ଦୁଇ କାରିଗରଙ୍କୁ କହନ୍ତୁ, ସେମାନେ ପଠାଇଥିବା ନମୂନା ସବୁ ଭିତରୁ ଯାହା ଇଚ୍ଛା ତାହା ଅନୁସରଣ କରି ଶାଢ଼ୀ ଓ ଅଳଙ୍କାର ନିର୍ମାଣ କରି ଦିଅନ୍ତୁ । ଆଉ ଗୋଟିଏ ଅନୁରୋଧ । ଏ ବର୍ଷ ମୋ ଜନ୍ମ ଦିନରେ ଦୁଇ କାରିଗରଙ୍କୁ ବିଶେଷ ଭାବରେ ସମ୍ମାନ ଦିଆଯାଉ ।"

ରାଜା ରାଜି ହେଲେ । ସେହି ଅନୁସାରେ ଦୁଇ କାରିଗରଙ୍କୁ ବିଶେଷ ଭାବରେ ସମ୍ମାନିତ କରାଗଲା ।

ବେତାଳ ଟିକିଏ ଚୁପ୍ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା ! ରାଣୀଙ୍କର ଏଭଳି ମତ ପରିବର୍ତ୍ତନର କାରଣ କ'ଣ ?

ଯେଉଁ ବୁଣାଳୀ ଓ କାରିଗରଙ୍କ ଜିନିଷମାନ ସେ ବାରମ୍ବାର ପ୍ରତ୍ୟାଖ୍ୟାନ କରି ଦେଉଥିଲେ, ହଠାତ୍ ସେମାନେ ଯାହା ଇଚ୍ଛା ତାହା ତିଆରି କରିଦେଲେ ସେ ପରିଧାନ କରିବାକୁ ପ୍ରସ୍ତୁତ, ଏହା କହିବା ରହସ୍ୟଜନକ ନୁହେଁ କି? ସ୍ୱାମୀଙ୍କ ମିତ୍ରଙ୍କ କଥାକୁ ସମ୍ମାନ ଦେବାକୁ ସେ ଏପରି କହିଲେ ନା ଆଉ କୌଣସି ଗୂଢ଼ କାରଣ ଅଛି? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ରାଣୀଙ୍କ ମତ ପରିବର୍ତ୍ତନର ଗୂଢ଼ ରହସ୍ୟ ଅଛି। ମନ୍ତ୍ରୀ ଓ ରାଜା ଯେତେବେଳେ କାରିଗର ଦୁହିଁଙ୍କର ବୟସର ଦୋଷ ବୋଲି କହୁଥିଲେ, ସେତେବେଳେ ସେମାନେ ଭାବୁଥିଲେ ଯେ ବୟସ ବଢ଼ିବା ସଙ୍ଗେ ସଙ୍ଗେ କାରିଗର ଦୁହେଁ ଶିଳ୍ପନିପୁଣତା ହରାଇଛନ୍ତି। ମହେନ୍ଦ୍ର ଆସି କହିଲେ ଯେ ବୟସର ଦୋଷ ନିଶ୍ଚୟ, କିନ୍ତୁ କାରିଗରମାନଙ୍କ ନିପୁଣତା ହ୍ରାସ ହୋଇ ନାହିଁ। ତାଙ୍କ କଥା ରହସ୍ୟମୟ ନୁହେଁ କି? ରାଣୀ କିନ୍ତୁ ଏ ରହସ୍ୟ ଠିକ୍ ବୁଝି ପାରିଲେ। ସେ ବୁଝିଲେ ଯେ ସେ ନିଜେ ବୟସ୍କା ହୋଇ ଗଲେଣି। ବୟସର ଦୋଷ ଠିକ୍, କିନ୍ତୁ ତାଙ୍କ ନିଜ ବୟସର ଦୋଷ, କାରିଗରମାନଙ୍କ ବୟସର ଦୋଷ ନୁହେଁ। ପୂର୍ବେ ସାଢ଼ୀ ଓ ଅଳଙ୍କାର ତାଙ୍କୁ ଯେପରି ମାନୁଥିଲା, ଏବେ ସେପରି ମାନିବ ନାହିଁ। ସେକଥା ନ ବୁଝି ସେ କାରିଗରମାନଙ୍କ ଦୋଷ ଧରୁଥିଲେ। ମହେନ୍ଦ୍ରଙ୍କ କଥା ତାଙ୍କୁ ନିଜ ଦେହେରର ପରିବର୍ତ୍ତନ ବିଷୟରେ ଚେତାଇ ଦେଲା।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ପ୍ରାଚୀନ ବୃକ୍ଷ ଡାଳରେ ଝୁଲି ପଡ଼ିଲା। (କଳ୍ପିତ)





# ଚାରି ପ୍ରଶ୍ନ

ଭୁବନଗିରିର ରାଜା ତାଙ୍କ ଉପଦେଷ୍ଟା ମଣ୍ଡଳରେ ଜଣେ ନୂତନ ସଦସ୍ୟ ଗ୍ରହଣ କରିବାକୁ ସ୍ଥିର କଲେ । ଏଭଳି ସଦସ୍ୟ ହୋଇଲେ ମନ୍ତ୍ରୀ । ସେ ନିଜ ଅମାତ୍ୟ ବର୍ଗଙ୍କ ଭିତରୁ କାହାକୁ ନ ନେଇ ଜନସାଧାରଣଙ୍କ ଭିତରୁ ଜଣକୁ ବାଛିବାକୁ ମନସ୍ଥ କଲେ ।

"ଆମ ରାଜ୍ୟର ଅନେକ ଯୁବକ ବାରାଣସୀ ଓ ପୁରୀ ଇତ୍ୟାଦି ସ୍ଥାନକୁ ଯାଇ ଶିକ୍ଷା ଓ ଜ୍ଞାନର ବିକାଶ କରୁଛନ୍ତି । ସେମାନଙ୍କ ପ୍ରତିଭାରୁ ଆମେ ଲାଭବାନ ନହେବା କାହିଁକି ? ଖାଲି ଅମାତ୍ୟ ଓ ସମ୍ଭ୍ରାନ୍ତ ଲୋକେ ମନ୍ତ୍ରୀ ହେବା ପାଇଁ ଉପଯୁକ୍ତ, ଅନ୍ୟମାନେ ନୁହନ୍ତି, ଏପରି ଧାରଣା ଭୁଲ ।" ରାଜା ଏହା କହିଲେ । ଅମାତ୍ୟମାନେ ରାଜାଙ୍କ କଥା ଉପରେ ବା କହିବେ କ'ଣ ? ଦରବାରର ସଭାସଦ୍‌ବର୍ଗ ଚୁପ୍ ରହିଲେ ।

ସେ ପଦ ସକାଶେ ଉପଯୁକ୍ତ ବ୍ୟକ୍ତି ମନୋନୟନ କରିବା ନିମନ୍ତେ ସେ ଗୋଟିଏ ତିନିଜଣିଆ ସମିତି ନିଯୁକ୍ତ କଲେ । ତା'ଛଡ଼ା ସେ ରାଜଗୁରୁଙ୍କୁ ଅନୁରୋଧ ଜଣାଇ କହିଲେ, "ଯେଉଁଦିନ ଚୂଡ଼ାନ୍ତ ମନୋନୟନ ହେବ, ସେଦିନ ଆପଣ ନିଜେ ସମିତିରେ ନେତୃତ୍ୱ ନେବେ ।" ରାଜଗୁରୁ ରାଜି ହେଲେ ।

ନିର୍ଦ୍ଦିଷ୍ଟ ଦିନ ପ୍ରାର୍ଥୀମାନଙ୍କୁ ଦରବାରର ଗୋଟିଏ ବଡ଼ କକ୍ଷ ଭିତରକୁ ଜଣ ଜଣ କରି ଡ଼କା ହେଲା । ଯାହାର ପରୀକ୍ଷା ଶେଷ ହେଉଥାଏ, ସେ ସେଠାରେ ଉପସ୍ଥିତ ରହିବାରେ ସମିତିର ବା ରାଜାଙ୍କର ଆପତ୍ତି ନଥାଏ ।

ତିନିଜଣିଆ ସମିତି ଗୋଟିଏ ପ୍ରଶ୍ନମାଳା ପ୍ରସ୍ତୁତ କରିଥାନ୍ତି । ସେ ପ୍ରଶ୍ନ ଗୁଡ଼ିକ ଶାସ୍ତ୍ର ଓ ଆଇନ୍ କାନୁନ୍ ଉପରେ ଆଧାରିତ ହୋଇଥାଏ । ରାଜଗୁରୁ ସେଗୁଡ଼ିକ ପଢ଼ି

କହିଲେ, "ଏ ପ୍ରଶ୍ନ ଗୁଡ଼ିକ ଠିକ୍ ଅଛି । ପ୍ରାର୍ଥୀ ଏସବୁର ଯଥାର୍ଥ ଉତ୍ତର ଦେବା ଆବଶ୍ୟକ । କିନ୍ତୁ ଏତିକି ଯଥେଷ୍ଟ ନୁହେଁ । ଯିଏ ରାଜାଙ୍କ ଉପଦେଷ୍ଟା ହେବ, ସେ ବିଜ୍ଞ ବ୍ୟକ୍ତି ହୋଇଥିବା ଆବଶ୍ୟକ । ଏସବୁ ପ୍ରଶ୍ନରୁ ଜଣଙ୍କର ବିଦ୍ୟାର ପରିଚୟ ମିଳି ପାରିବ, କିନ୍ତୁ ବିଜ୍ଞତାର ପରିଚୟ ମିଳିବ ନାହିଁ ।"

"ମହାଶୟ, ଏସବୁ ପ୍ରଶ୍ନ ତ ଆମେ ଶାସ୍ତ୍ରରୁ ଆହରଣ କରିଛୁଁ । ଶାସ୍ତ୍ର ଋଷିମାନେ ପ୍ରଣୟନ କରିଛନ୍ତି । ଋଷିମାନେ କ'ଣ ବିଜ୍ଞ ନଥିଲେ ?" ସମିତିର ଜଣେ ପ୍ରବୀଣ ସଭ୍ୟ ରାଜଗୁରୁଙ୍କୁ ପଚାରିଲେ ।

"ସେମାନେ ମହାନ୍ ବିଜ୍ଞ ଥିଲେ । ଶାସ୍ତ୍ରର ବିଜ୍ଞତା ଓ ସାଧାରଣ ଜ୍ଞାନର ବିଜ୍ଞତା ଏକା କଥା ନୁହେଁ । ଆମର ଲୋଡ଼ା ଏପରି ଲୋକ ଯାହା ପାଖରେ ଦୁଇ ପ୍ରକାର ବିଜ୍ଞତା ଥିବ ।" ରାଜଗୁରୁ କହିଲେ ।

ତେଣୁ ସମିତି ନିର୍ଦ୍ଧାରଣ କରିଥିବା ପ୍ରଶ୍ନ ଗୁଡ଼ିକ ଉପରେ ରାଜଗୁରୁ ଆଉ ଚାରିଗୋଟି ପ୍ରଶ୍ନ ପଚାରିବାକୁ ଲାଗିଲେ । ଅଧିକାଂଶ ପ୍ରାର୍ଥୀ ସମିତିର ପ୍ରଶ୍ନ ଗୁଡ଼ିକର ଉତ୍ତର ମୋଟାମୋଟି ଦେଇ ପାରିଲେ, କିନ୍ତୁ ରାଜଗୁରୁଙ୍କ ପ୍ରଶ୍ନର ଉତ୍ତର କେହି ଦେଇ ପାରିଲେ ନାହିଁ ।

ଅବଶେଷରେ ବାରାଣସୀରୁ ଆସିଥିବା ସୁମନ୍ତ୍ର ନାମକ ଯୁବକଙ୍କର ପାଳି ପଡ଼ିଲା ।

"ଯେଉଁ ଧନକୁ କେହି ହରଣ କରି ପାରନ୍ତି ନାହିଁ, ସେ ଧନକୁ ହରଣ କରିପାରେ କିଏ ?" ହେଲା ରାଜଗୁରୁଙ୍କର ପ୍ରଥମ ପ୍ରଶ୍ନ ।



"ମହାଶୟ, ଜ୍ଞାନ ରୂପକ ଧନକୁ କେହି ହରଣ କରି ପାରନ୍ତି ନାହିଁ । କିନ୍ତୁ ଅହଙ୍କାର ଏହାକୁ ହରଣ କରି ପାରେ ।" ସୁମନ୍ତ କହିଲେ ।

"କେଉଁ ଦୁଇ ପ୍ରକାର କଥା ଜଣେ ନିଜ ସ୍ତ୍ରୀଠାରୁ ବି ଗୋପନ ରଖିବା ଦରକାର ?"

"ଯେଉଁ କଥା ଜଣେ ପ୍ରକାଶ ନ କରିବା ପାଇଁ ଭଗବାନଙ୍କ ନାମରେ ଶପଥ ନେଇଥିବ; ଦ୍ୱିତୀୟରେ ଯାହା ରାଜ୍ୟର ଶାସନ-ରହସ୍ୟ ହୋଇଥିବ ।"

"କେଉଁ ଚିଜ ଅନର୍ଥ ସୃଷ୍ଟି କରେ ?"

"ନିଜ ଆବଶ୍ୟକତାଠାରୁ ବଳି ଯେ କୌଣସି ଚିଜ ଅନର୍ଥ ସୃଷ୍ଟି କରେ ।"

"ସାବାସ୍ । ବର୍ତ୍ତମାନ ମୋର ଶେଷ ପ୍ରଶ୍ନର ଉତ୍ତର ଦେଇ ପାରିଲେ ହେଲା । ଉଚ୍ଚ ରାଜ ପଦବୀରେ ଅଧିଷ୍ଠିତ ଜଣେ ବ୍ୟକ୍ତି କେଉଁ ସବୁ ଗୁଣର ଅଧିକାରୀ ହେବା ଆବଶ୍ୟକ ?" ରାଜଗୁରୁ ପଚାରିଲେ ।

"ମହାଶୟ, ମୋ ପ୍ରଥମ ତିନୋଟି ପ୍ରଶ୍ନ ଭିତରେହିଁ ଏ ଚତୁର୍ଥ ପ୍ରଶ୍ନର ଉତ୍ତର ନିହିତ ରହିଛି । ଜଣେ ନିରହଙ୍କାରୀ ଓ ନମ୍ର ହେବା ଆବଶ୍ୟକ; ଜଣେ ରାଜ୍ୟର ଶାସନ ରହସ୍ୟ ବା କୌଶଳ ଆପଣାର ଲୋକ ପାଖରୁ ବି ଗୋପନ ରଖିବା ଆବଶ୍ୟକ ଏବଂ ଜଣେ ଆବଶ୍ୟକ ତୁଳନାରେ ପଦେ ମଧ୍ୟ ଅଧିକ କଥା କହିବା ଉଚିତ ନୁହେଁ କି ଆବଶ୍ୟକଠାରୁ ବେଶି ଚିଜ ପାଇଁ ଲୋଭ କରିବା ଉଚିତ ନୁହେଁ ।" ସୁମନ୍ତ ବିନୟୀ ଭାବରେ ଉତ୍ତର ଦେଲେ ।

ରାଜଗୁରୁଙ୍କ ମୁହଁ ଅତ୍ୟନ୍ତ ପ୍ରସନ୍ନ ଦିଶିଲା । ରାଜା ମଧ୍ୟ ସନ୍ତୁଷ୍ଟ ଦେଖାଗଲେ । ମନୋନୟନ ସମିତିର ସଦସ୍ୟମାନେ ସପ୍ରଶଂସ ଦୃଷ୍ଟିରେ ସୁମନ୍ତଙ୍କୁ ଅନାଇଲେ ।

ରାଜଗୁରୁଙ୍କ ପରାମର୍ଶ କ୍ରମେ ରାଜା ନିଜେ ସୁମନ୍ତଙ୍କୁ ତାଙ୍କ ଉପଦେଷ୍ଟା ରୂପେ ନିଯୁକ୍ତ ଦେଲେ ।






ଭାରତର ମନ୍ଦିର

# ଚିଦାମ୍ବରମ

ବହୁ ପୂର୍ବକାଳରେ ଦାରୁକାବନ ନାମକ ସ୍ଥାନରେ ଅନେକ ପଣ୍ଡିତ ରହୁଥିଲେ । ସେମାନେ ଶାସ୍ତ୍ର ତଥା ମନ୍ତ୍ରତନ୍ତ୍ରରେ ବହୁତ ବ୍ୟୁତ୍ପତ୍ତି ଲଭ କରି ଗର୍ବରେ ଫାଟି ପଡୁଥିଲେ । ସମସ୍ତେ ସେମାନଙ୍କୁ ପୂଜା କରିବେ ବୋଲି ସେମାନେ ଆଶା କରୁଥିଲେ ।

ଦିନେ ପଣ୍ଡିତମାନେ ଭୋଜି ଖାଇବାକୁ ଯାଇଥିବା ଅବସରରେ ଜଣେ ଯୁବକ ସାଧୁ ଆସି ଦାରୁକାବନରେ ପହଞ୍ଚିଲେ । ସେ ଗୀତ ବୋଲିବାକୁ ଓ ଗଳ୍ପ କହିବାକୁ ଲଗିଲେ । ପଣ୍ଡିତମାନଙ୍କ ଗୃହିଣୀମାନେ ଘର କାମ ଭୁଲି ମୁଗଧ ହୋଇ ସେ ଯୁବକଙ୍କୁ ବେଷ୍ଟନ କରି ବସିଲେ ।





ପଣ୍ଡିତମାନେ ଫେରି ଆସି ସେ ଦୃଶ୍ୟ ଦେଖି ଅବାକ୍ ହେଲେ । ସେମାନେ ସେମାନଙ୍କ ଗୃହିଣୀମାନଙ୍କୁ ଡାକିଲେ, କିନ୍ତୁ ଗୃହିଣୀମାନେ ଶୁଣିଲେ ନାହିଁ । ସେମାନେ ଧମକ ଚମକ ଦେଲେ । ସେଥିରେ ବି ଫଳ ହେଲା ନାହିଁ । ସାଧ୍ୱୀ ସ୍ତ୍ରୀଲୋକମାନେ କେହି ସେମାନଙ୍କ ପ୍ରତି ଦୃଷ୍ଟିପାତ ମଧ୍ୟ କଲେ ନାହିଁ ।




ପଣ୍ଡିତମାନେ ନିଜ ନିଜର ଯାଦୁଶକ୍ତି ଦେଖାଇବାକୁ ତତ୍ପର ହେଲେ । ସେମାନେ ଗୋଟିଏ ଭୀଷଣାକୃତି ବାଘ ସୃଷ୍ଟି କରି ତାକୁ ସେ ଅଚିହ୍ନା ଯୁବକ ଆଡ଼େ ପେଷିଲେ । ବାଘ ପ୍ରଚଣ୍ଡ ରଡ଼ି କରି ଯୁବକଙ୍କ ଆଡେ ଝପଟିଗଲା । କିନ୍ତୁ ଯୁବକ ଟିକିଏ ବି ଶଙ୍କିଲେ ନାହିଁ ।

ଯୁବକଙ୍କୁ ସ୍ପର୍ଶ କରିବା ମାତ୍ରେ ବାଘଟି ଉଭେଇ ଗଲା । ପଣ୍ଡିତମାନେ ଦେଖିଲେ, ବାଘର ଚମଡ଼ା ଖଣ୍ଡିକ ଯୁବକଙ୍କ ଦେହରେ ଗୁଡେଇ ହୋଇ ଯାଇଛି । ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେମାନେ କ'ଣ କରିବେ ବୁଝି ପାରିଲେ ନାହିଁ ! ନିଜ ନିଜକୁ ଅନାଇ ସେମାନେ ରାଗରେ ଦାନ୍ତ କଡ଼ମଡ଼ କଲେ ।





କିନ୍ତୁ ସେମାନେ ଏତିକିରେ ଦବିବା ଲୋକ ନୁହନ୍ତି । ସେମାନେ ଗୋଟିଏ ବାମନାକୃତି ରାକ୍ଷସ ସୃଷ୍ଟି କଲେ ! ସେମାନଙ୍କର ସମସ୍ତ କ୍ରୋଧ ଓ ଘୃଣାକୁ ବଳ ପାଇ ରାକ୍ଷସ ଅଚିହ୍ନା ଯୁବକଙ୍କ ଉପରକୁ ଲଂଫ ଦେଲା । କିନ୍ତୁ ହଠାତ୍ ଦେଖାଗଲା, ଯୁବକ ତାକୁ ନିଜ ପାଦ-ତଳେ ଚୃପି ରଖିଛନ୍ତି । ସେ ହଲଚଲ ହୋଇ ପାରୁନାହିଁ ।

ସେତେବେଳେ ଯାଇ ପଣ୍ଡିତମାନେ ବୁଝିଲେ ଯେ ସେ ଯୁବକଙ୍କ ଶକ୍ତି ଆଗରେ ସେମାନଙ୍କ ଶକ୍ତି କିଛି ନୁହେଁ । ସେମାନେ ନିଜ ନିଜ ଭିତରେ ପରାମର୍ଶ କରି ଯୋଡ଼ହସ୍ତ ହୋଇ ଯାଇ ସାଧୁଙ୍କୁ ପଚାରିଲେ, "ଆପଣ କିଏ ?" ଯୁବକ ଏଥର ମୃଦୁ ମୃଦୁ ହସିଲେ ।





ଯୁବକ ନିଜକୁ ପ୍ରକଟ କଲେ । ସେ ସ୍ୱୟଂ ଶିବ । ପଣ୍ଡିତମାନେ ଶିବଭକ୍ତ ହୋଇ-ଥିବା ଦୃଷ୍ଟିରୁ ସେମାନଙ୍କ ସ୍ୱଭାବକୁ ଦୂଷିତ କରୁଥିବା ଗର୍ବ ଭଙ୍ଗ କରିବା ନିମନ୍ତେ ସେ ଆସିଥିଲେ । ସେମାନେ ଦେଖିଲେ କି ପରିସ୍ଥିତି ଏପରି ହୋଇପାରେ ଯେ ସେମାନଙ୍କ ସ୍ତ୍ରୀମାନେ ବି ସେମାନଙ୍କୁ ଚିହ୍ନିବେ ନାହିଁ । ସେମାନଙ୍କ ଗର୍ବ ଖର୍ବ ହେଲା ।

ପଣ୍ଡିତମାନେ ଭକ୍ତି ଓ ଆନନ୍ଦରେ ଶିବଙ୍କ ଉଦ୍ଦେଶ୍ୟରେ ସଙ୍ଗୀତ ଗାନ କଲେ । ଶିବ ପ୍ରୀତ ହୋଇ ନୃତ୍ୟ କଲେ । ଭକ୍ତମାନେ ନିଜ ନିଜକୁ ଭୁଲି ବିମଳ ଆନନ୍ଦରେ ମଗ୍ନି ରହି ସେମିତି ଗୀତ ଗାଉଥାନ୍ତି । ଶିବ କେତେବେଳେ ଅନ୍ତର୍ହିତ ହୋଇଗଲେ ସେମାନେ ବୁଝି ପାରିଲେ ନାହିଁ ।





ସେ ଘଟଣା ଯାଇ ଆଦିଶେଷ (ନାଗ)ଙ୍କ କାନରେ ପଡ଼ିଲା । ସେ ତାଙ୍କ ଆଗରେ ଥରେ ନୃତ୍ୟର ପୁନରାବୃତ୍ତି କରିବା ନିମନ୍ତେ ଶିବଙ୍କୁ ପ୍ରାର୍ଥନା କଲେ । କିନ୍ତୁ ଶିବଙ୍କର ସେହିଭଳି ନୃତ୍ୟ ଦେଖିବାକୁ ହେଲେ ମାନବଜନ୍ମ ନେବା ଆବଶ୍ୟକ ବୋଲି ସେ ବୁଝିଲେ । ଆଦିଶେଷ ପାତଞ୍ଜଳି ରୂପେ ଜନ୍ମ ନେଲେ ।

ଶିବଙ୍କ ନଟରାଜ ମୂର୍ତ୍ତି ସେହି ନୃତ୍ୟର ଏକ ଭଙ୍ଗୀ । ତାଙ୍କ ପାଦ ତଳେ ଥିବା ବାମନ ହେଉଛି ମଣିଷର ଅହଙ୍କାର । ମୂର୍ତ୍ତିର ଏକ ହାତରେ ଥିବା ଡିଣ୍ଡିମ ସୃଷ୍ଟି ଓ ଜୀବନର ଛନ୍ଦ । ଅନ୍ୟ ହାତରେ ଥିବା ଅଗ୍ନି ଶକ୍ତିର ସୂଚନା । ତୃତୀୟ ହସ୍ତ ଆଶୀଷ ଦେବା ପାଇଁ ଏବଂ ଚତୁର୍ଥ ହସ୍ତ ଶରଣ ଦେବା ନିମନ୍ତେ ପ୍ରସ୍ତୁତ ।





ଯେଉଁଠି ଏ ଘଟଣା ଘଟିଥିଲା, ସେହି ପ୍ରାଚୀନ ଦାରୁକାବନ ଆଜିର ଚିଦାମ୍ବରମ୍ । ଏହା ଯୁଗେ ଯୁଗେ ଶିବକ୍ଷେତ୍ର ରୂପେ ପ୍ରସିଦ୍ଧ । ଆଜି ଯେଉଁ ମନ୍ଦିର ଦେଖାଯାଏ, ତାହା ଯେ କେବଳ ବିଶାଳ, ତାହା ନୁହେଁ, ତାହାର ଅଂଶ ବିଶେଷ ପ୍ରାୟ ଦୁଇ ହଜାର ବର୍ଷ ପୁରୁଣା । କଳା ମସୃଣ ପଥରରେ କାରୁକାର୍ଯ୍ୟ ଅତି ସୁନ୍ଦର ।



# "ଅଢଥି"

ହଜାରେ ବର୍ଷ ତଳର କଥା । ଚୀନର ଏକ ଛୋଟ ରାଜ୍ୟର ରାଜଧାନୀରେ ଗୋଟାଏ ଚୋରର ଉପଦ୍ରବ କରୁଥାଏ । ସେ ଚୋର ଏଡ଼େ କୌଶଳୀ ଯେ ତାକୁ କେହି ଧରି ପାରିବା ତ ଦୂରର କଥା, କେହି କେବେ ବି ଦେଖିପାରୁ ନଥାନ୍ତି ।

ସେ ସହରର ଥିଲାବାଲା ଲୋକେ ଯାଇ ବାରମ୍ବାର ସେ ରାଜ୍ୟର ରାଜାଙ୍କ ପାଖରେ ଆପତ୍ତି କଲେ । ସେ ଚୋରର ବିଶେଷତ୍ୱ ହେଲା, ସିଏ ଯେଉଁ ଘରୁ ଚୋରି କରେ, ସେ ଘର କାନ୍ଥରେ ଲେଖିଦେଇ ଯାଏ "ଅଢଥି"।

ରାଜା କଟୁଆଲକୁ ହୁକୁମ ଦେଲେ, "ଏଭଳି ଗୋଟାଏ ଚୋର ଆମ ପ୍ରହରୀମାନେ ଧରି ପାରିବେ ନାହିଁ, ଏହା ବଡ଼ ଲଜ୍ଜାର ବିଷୟ । ଏଥିରେ ଆମ ସମ୍ମାନ ରହିବଟି ? ଯେପରି ଉପାୟରେ ହେଉ, ଚୋରଟିକୁ ଧରିବାକୁ ଚେଷ୍ଟା କର ।"

କଟୁଆଲ ସବୁ ପ୍ରହରୀମାନଙ୍କୁ ଡକାଇ ଯେମିତି ହେଲେ ଚୋରଟିକୁ ଧରିବାକୁ ହେବ ବୋଲ୍ କଡ଼ା କରି ଶୁଣାଇ ଦେଲେ ।

ଦିନେ ପ୍ରହରୀମାନେ ଜଣେ ଯୁବକକୁ ଧରି ଆଣି କଟୁଆଲ ଆଗରେ ହାଜର୍ କଲେ ଓ କହିଲେ, "ହଜୁର, ଏଇ ହେଲା 'ଅଢଥି' ଚୋର ।"

କଟୁଆଲ ଯୁବକ ଆଡ଼େ ତୀକ୍ଷ୍ଣ ଦୃଷ୍ଟିରେ ଅନାଇଲେ । ଯୁବକ ତାଙ୍କୁ ନମସ୍କାର କରି କହିଲା, "ହଜୁର୍ ! ମୁଁ ଜଣେ ସାଧାରଣ ବେପାରୀ । ଏମାନେ ମୋତେ ଅହେତୁ ଦେଖି ଧରି ଆଣିଛନ୍ତି ।"

କଟୁଆଲ ପ୍ରହରୀ-ସର୍ଦ୍ଦାରକୁ ପଚାରିଲେ, "ଏ ଯୁବକ ଅଢଥି-ଚୋର ବୋଲି ପ୍ରମାଣ ?"

"ହଜୁର, ଏହାର ଗତିବିଧି ଉପରେ ଆଖି ରଖି ଆମେ ଠିକ୍ ଠିକ୍ ବୁଝିଛୁଁ ।"



କଟୁଆଳ କହିଲେ, "ଆଚ୍ଛା, ଏହାକୁ ନେଇ ତମେ କାରାଗାରରେ ରଖ । ପରେ ବିଚାର କରିବା ।"

ଯୁବକକୁ କାରାଗାର ଭିତରେ ରଖାଗଲା । ସେଦିନ ସନ୍ଧ୍ୟାବେଳେ କାରାରକ୍ଷୀ ତା' କୋଠରୀ ଆଗଦେଇ ଯିବାବେଳେ ଯୁବକ କହିଲା, "ମହାଶୟ! କୌଣସି ବଡ଼ ଲୋକଙ୍କୁ ଭେଟିବା ବେଳେ କିଛି ଭେଟି ଦେବା ହେଲା ମୋର ଅଭ୍ୟାସ । କିନ୍ତୁ ମୋର ଦୁର୍ଭାଗ୍ୟ ଆପଣଙ୍କୁ କିଛି ଦେଇ ପାରିଲି ନାହିଁ । ଟଙ୍କା ଯେ ନାହିଁ, ତାହା ନୁହେଁ, କିନ୍ତୁ···"

କାରାରକ୍ଷୀ ଥିଲା ଲୋଭୀ ଲୋକ । ସେ ପଚାରିଲା, "କିନ୍ତୁ କ'ଣ ?"

"ମୁଁ ସାଧାରଣ ବେପାରୀ । ମୋର କେହି ନାହିଁ । ପଇସା ସଞ୍ଚୟ କରି ଦିନେ ଘର ତୋଳିବି, ବାହା ସାହା ହେବି, ସେଥିପାଇଁ ଏଣେ ତେଣେ କିଛି ସୁନା ଟଙ୍କା ଲୁଚାଇ ରଖିଛି । କିନ୍ତୁ ମୁଁ ସେକଥା କହିଲେ କଟୁଆଳ ଧରିବେ ତାହା ଚୋରି ଟଙ୍କା ।" ଦୀର୍ଘନିଃଶ୍ୱାସ ଛାଡ଼ି ଯୁବକ କହିଲା ।

"କେଉଁଠି ଟଙ୍କା ରଖିଛ ?" କାରାରକ୍ଷୀ ପଚାରିଲା ।

"ଆଜ୍ଞା, ମନ୍ଦିର ପଛପଟେ ଖଣ୍ଡିଏ ତିନି କୋଣିଆ ପଥର ତଳେ । ଆପଣ ଯଦି କିଛି ମନେ ନ କରିବେ, ତେବେ ନିଜେ ଯାଇ ବାହାର କରି ଆଣନ୍ତୁ । ସେଥିରେ ମୁଁ ଖୁସି ହେବି ।" ଯୁବକ କହିଲା ।

କାରାରକ୍ଷୀ ପ୍ରଥମେ ଯୁବକ କଥାରେ ପରତେ ଗଲା ନାହିଁ । କିନ୍ତୁ ଥରେ ଯାଇ ଦେଖିଲେ ବା କ୍ଷତି କ'ଣ ? ଏହା ଭାବି ସେ ସନ୍ଧ୍ୟାବେଳକୁ ମନ୍ଦିର ପଛପଟକୁ ଯାଇ ତିନିକୋଣିଆ ପଥର ଖଣ୍ଡିକ ଉଠାଇଦେଇ ତା' ତଳେ ଗୋଟିଏ ଥଳି ଥିବାର ଦେଖିଲା । ଥଳି ଭିତରେ ସୁନା ଟଙ୍କା ଥିଲା । କଟୁଆଳ ଯୁବକ ଉପରେ ବହୁତ ଖୁସି ହେଲା । କାରାଗାର ଭିତରେ ବନ୍ଦୀ ପ୍ରତି ଯେତେ ଭଲ ବ୍ୟବହାର କରିବା ସମ୍ଭବପର, ସେ ତାହା କରୁଥାଏ ।

କିଛିଦିନ ପରେ ଗୋଟିଏ ପର୍ବଦିନ ଆସୁଥାଏ । ଯୁବକ ତହିଁ ପୂର୍ବଦିନ କହିଲା;



"କାରାରକ୍ଷୀ ମହୋଦୟ ! ଆପଣ ଯଦି ପୋଲ ତଳେ ପଡ଼ିଥିବା ପଥର ଖଣ୍ଡମାନ ଭିତରୁ ମୁଁ ରଖିଥିବା ଦୁଇଟି ଥଳି ବାହାର କରି ଆଣନ୍ତେ, ତେବେ ଗୋଟିଏ ଥଳି ଆପଣ ନିଜ ଘର ପାଇଁ ରଖନ୍ତେ ଓ ଅନ୍ୟ ଥଳିଟି ମୋ ବୁଢ଼ା ବାପା ମା'ଙ୍କ ପାଖକୁ ପଠାଇ ଦିଅନ୍ତେ । ସେମାନେ ତ ମୋ ଅବସ୍ଥା ଜାଣନ୍ତି ନାହିଁ । ଟଙ୍କାତକ ପାଇଲେ ମୁଁ ଭଲ ଅଛି ବୋଲି ବୁଝନ୍ତେ ଓ ପର୍ବ ପାଇଁ ଖର୍ଚ୍ଚବାର୍ଚ୍ଚ କରନ୍ତେ ।"

ଥରେ ଟଙ୍କା ଆବିଷ୍କାର କରି କାରାରକ୍ଷୀର ଲୋଭ ବଢ଼ି ଯାଇଥାଏ । ସେ ସନ୍ଧ୍ୟାବେଳେ ଯାଇ ପୋଲ ତଳେ ଖୋଜାଖୋଜି କରି ଗୋଟିଏ ଥଳି ପାଇଲା । ସେ ଫେରି ଆସି ଯୁବକକୁ କହିଲା, "କାହିଁ, ଆଉ ଗୋଟିଏ ଥଳି ତ ପାଇଲି ନାହିଁ । ଏଇ ଗୋଟିଏ ପାଇଲି । କାହାକୁ ଦେଲେ ସେ ତମ ଘରେ ଦେଇ ପାରିବ ?"

"ମହାଶୟ ! ଆପଣ ଯେତେବେଳେ ମାତ୍ର ଗୋଟିଏ ଥଳି ପାଇଲେ, ସେ ଗୋଟିକ ଆପଣ ରଖନ୍ତୁ । ମୋର ଦୁର୍ଭାଗ୍ୟ, ମୋ ବାପା ମା'ଙ୍କୁ ଖୁସି କରି ପାରିଲି ନାହିଁ । ତେବେ, ଆପଣ ଯଦି ମୋତେ ଅବିଶ୍ୱାସ କରୁ ନାହାନ୍ତି, ତେବେ ମୋତେ କିଛି ସମୟ ପାଇଁ ଛାଡ଼ି ଦିଅନ୍ତୁ । ମୁଁ କଦାପି ପଳାଇବି ନାହିଁ । ପଳାଇବି କାହିଁକି ? ମୁଁ ନିର୍ଦ୍ଦୋଷ ବୋଲି ପ୍ରମାଣ ହୋଇଯିବ । ସସମ୍ମାନେ ମୁକ୍ତି ପାଇବି । ମୁଁ ଖାଲି ଅନ୍ୟ ଥଳିଟି ବାହାର କରି ଆଣି ବାପା ମା'ଙ୍କୁ ଦେଇ ଆସିବି । ପୁରା ଦେବା ମଧ୍ୟ ଦରକାର ହେବ ନାହିଁ । କିଛି ଟଙ୍କା ବଞ୍ଚାଇ ଆଣିବି । ଆପଣ ପର୍ବ ଦିନରେ ସପରିବାରେ ଭଲ ଖାଇବେ ।"

କାରାରକ୍ଷୀ ପୁଣି କିଛି ଟଙ୍କା ପାଇବା ଲୋଭରେ ଏଥିରେ ଆପତ୍ତି କଲା ନାହିଁ । ଯୁବକକୁ ଛାଡ଼ି ଦେଲା । କିନ୍ତୁ ସେ ଚାଲିଯିବା ପରେ ତା' ମନରେ ବହୁତ ଶଙ୍କା ହେଲା । ଯଦି ଯୁବକ ନ ଫେରିବ ? ତେବେ ତା' ନିଜର ମୁଣ୍ଡ କାଟ ହୋଇପାରେ । କାରାଗାରରୁ ବନ୍ଦୀକୁ ଛାଡ଼ିଦେବା ଗୁରୁତର ଅପରାଧ ।

ସେ ରାତି ସାରା ଶୋଇ ପାରିଲା ନାହିଁ । କିନ୍ତୁ ମଝି ରାତି ବେଳକୁ ଯୁବକ ଫେରି ଆସିଲା ।

ସେ କିଛି ଟଙ୍କା ବି ଦେଲା । କାରାରକ୍ଷୀ ଆନନ୍ଦରେ ତାକୁ କୁଣ୍ଢାଇ ଢକାଇଲା ।

ସକାଳେ କଟୁଆଳ ଆସି ଗମ୍ଭୀର ସ୍ୱରରେ କାରାରକ୍ଷୀକୁ କହିଲେ, "ଅତିଥି-ଚୋର ସନ୍ଦେହରେ ଯେଉଁ ଯୁବକ ବନ୍ଦୀ ହୋଇଛି, ସେ ବାସ୍ତବିକ ଚୋର ନୁହେଁ । ତାକୁ ବର୍ତ୍ତମାନ ଛାଡି ଦିଅ । ନିର୍ଦ୍ଦୋଷକୁ ବନ୍ଦୀ କରିବା ଠିକ୍ ହୋଇ ନାହିଁ ।"

ପ୍ରବଳ ଉତ୍ସାହରେ କାରାରକ୍ଷୀ କହିଲା, "ହଜୁର୍ ! ଆପଣ ଠିକ୍ କହୁଛନ୍ତି । ଏ ଯୁବକ ଅତ୍ୟନ୍ତ ଭଦ୍ର ଓ ସଚ୍ଚୋଟ ।"

"ତମେ ସେକଥା ମୋତେ ଆଗରୁ କହିବା ଉଚିତ୍ ଥିଲା । କାଲି ରାତିରେ ଅସଲ 'ଅତିଥି' ଚୋର ପୁଣି ଚୋରି କରିଛି । ସେହି ଏକା ହସ୍ତାକ୍ଷରରେ 'ଅତିଥି' ବୋଲି ଲେଖି ଦେଇ ଯାଇଛି । ତେଣୁ ଏ ବନ୍ଦୀ ଯୁବକ ଚୋର ହୋଇ ପାରେନା ।" କଟୁଆଳ କହିଲେ । ଚୋରକୁ ମୁକ୍ତ ଦେବା ବେଳେ କଟୁଆଳ ପୁଣି କହିଲେ, "କାରାରକ୍ଷୀ ! ବନ୍ଧୁ ! ତମକୁ ଗୋଟାଏ ଦୁଃସମ୍ବାଦ ଦେବାର ଅଛି । ଚୋରି ହୋଇଛି ତମର ଘରୁ । ସକାଳେ ଜଣେ ପ୍ରହରୀ ସେ ରାସ୍ତାରେ ଆସିବା ବେଳେ ତମ ସ୍ତ୍ରୀଠୁଁ ଖବର ପାଇ ମୋତେ ଆସି କହିଲା ।"

କାରାରକ୍ଷୀ ଦୁଃଖ ଓ ବିସ୍ମୟରେ କଥା କହିପାରିଲା ନାହିଁ । ଯୁବକଟି କଟୁଆଳକୁ ଓ କାରାରକ୍ଷୀକୁ ଲମ୍ବ ଅଭିବାଦନ କରି ଚାଲିଗଲା ।

କାରାରକ୍ଷୀ ଘରକୁ ଯାଇ ଦେଖିଲା, ସିନ୍ଦୁକରେ ଥିବା ବହୁଦିନ ଧରି ସଞ୍ଚିତ ଟଙ୍କା ସବୁ ଚୋରି ହୋଇ ଯାଇଛି । ତେବେ ତା' ସ୍ତ୍ରୀ ତାକୁ ଗୋଟିଏ ଥଳି ଦେଖାଇ ଚୁପ୍ ଚୁପ୍ କହିଲା, "ଚୋର ଏଥିରେ ଅଳ୍ପ କିଛି ଟଙ୍କା ଓ ଖଣ୍ଡିଏ ଚିଠି ଲେଖି ରଖିଯାଇଛି । ଚିଠିରେ ଲେଖା ଅଛି : "ତମ ସହଯୋଗ ପାଇଁ ଧନ୍ୟବାଦ ।" ମୁଁ ଏ ଚିଠି କଥା କାହାକୁ କହି ନାହିଁ । କିଏ ତା' ସହ ସହଯୋଗ କଲା ?"

କାରାରକ୍ଷୀ ଖାଲି ମୂକ ଭଳି ଅନାଇଥାଏ ।





# ଶିବଲୀଳା

ମା'ଙ୍କ କଥା ଶୁଣି ସିଦ୍ଧରାମ ଖୁବ୍ ଖୁସି ହୋଇଗଲା । ସେ ଉତ୍ସାହିତ ହୋଇ କହିଲା, "ମା, ଦୀପାବଳୀ ତ କିଛିଦିନ ପରେ ପଡ଼ିବ । ମୁଁ ଯାଇ ମୋର ଅପା ଓ ଭିଣୋଇଙ୍କୁ ନେଇ ଆସିବି । ସେମାନଙ୍କୁ ଆଜି ପର୍ଯ୍ୟନ୍ତ କେବେ ମଧ୍ୟ ନିମନ୍ତ୍ରଣ କରାଯାଇ ନାହିଁ ।"

"ସିଦ୍ଧୁ, ତୋ ବାପାଙ୍କର ମୃତ୍ୟୁ ପରେ ଆମ ଘରେ ଆଉ କିଏ ଅଛି ଯେ ସେମାନଙ୍କୁ ଡ଼ାକିବ ? ତୁ ତ ସାନ ପିଲା । ସେମାନଙ୍କ ଘରକୁ ଯିବାକୁ ହେଲେ ଜଙ୍ଗଲ ରାସ୍ତା ଦେଇ ଯିବାକୁ ହେବ । ସେ ଜଙ୍ଗଲ ପୁଣି ବାଘ, ଭାଲୁ, ସିଂହ, ସାପ ଆଦି ଜନ୍ତୁ ଜାନୁଆରରେ ପୂର୍ଣ୍ଣ । ତୁ ବଡ଼ ହୋଇଗଲେ ସେମାନଙ୍କୁ ନିମନ୍ତ୍ରଣ କରି ଆଣିବୁ ।" ସିଦ୍ଧୁର ମା' ତାକୁ ବୁଝାଇବାକୁ ଲାଗିଲେ । ସିଦ୍ଧରାମ ସବୁ ଶୁଣି ଚୁପ୍ ରହିଲା ।

ପରଦିନ ସକାଳୁ ବିଛଣାରୁ ଉଠିପଡ଼ି ମା'ଙ୍କୁ କିଛି ନକହି ସିଦ୍ଧୁ ଚୁପ୍‌ଚାପ୍ ଘରୁ ବାହାରି ପଡ଼ିଲା । ଘନ ଜଙ୍ଗଲ ଭିତରେ ହିଂସ୍ର ପଶୁଙ୍କର ବିକଟାଳ ରଡ଼ିକୁ ଖାତିର୍ ନ କରି ସେ ଆଗକୁ ଆଗକୁ ଚାଲିଲା । କିଛିବାଟ ଗଲା ପରେ ଜଙ୍ଗଲ ଶେଷ ହେଲା ଓ ଏକ ସୁନ୍ଦର ରାସ୍ତା ସେ ଦେଖି ପାରିଲା । ରାସ୍ତାରେ ଚାଲୁଥିବା ଲୋକମାନଙ୍କୁ ପଚାରି ପଚାରି ଶ୍ରୀଶୈଳମ୍‌ରେ ପହଞ୍ଚିଲା । ସେଠାରେ ଦେଖିଲା ଅନେକ ମନ୍ଦିର ରହିଛି । ତା'ପରେ ସେ ଜଣେ ତୀର୍ଥଯାତ୍ରୀଙ୍କୁ ପଚାରିଲା, "ମହାଶୟ, ମଲ୍ଲିକାର୍ଜୁନ କେଉଁଠି ରହନ୍ତି ?" ସେ ଯାତ୍ରୀ ଏକ ମନ୍ଦିରକୁ ସଙ୍କେତ କରି



ଦେଖାଇ ଦେଲେ । ସିଦ୍ଧରାମ ମନ୍ଦିର ଭିତରକୁ ଯାଇ ଦେଖିଲା ସେଠାରେ ଶିବଲିଙ୍ଗ ବ୍ୟତୀତ ଅନ୍ୟ କିଛି ନାହିଁ ।

ଏତେ ରାସ୍ତା ଚାଲି ଚାଲି ବିଚରା ସିଦ୍ଧରାମ ଥକି ଯାଇଥିଲା । ସେ ଶିବଲିଙ୍ଗ ନିକଟରେ ବସିପଡ଼ି ବଡ଼ ବ୍ୟାକୁଳ ଭାବରେ କହିଲା, "ଭାଇ, ତୁମକୁ ଓ ଅପାକୁ ନେବାକୁ ମୁଁ ଆସିଛି । ମୁଁ ଅନେକ କଷ୍ଟକରି ଏଠାରେ ପହଞ୍ଚିଛି । ଏବେ ଦୀପାବଳୀ ଆସୁଛି । ସବୁ ପିଲାଙ୍କର ଭଉଣୀ ଭିଣୋଇ ଆସୁଛନ୍ତି । ମୁଁ ମଧ୍ୟ ତୁମ ଦୁହିଁଙ୍କୁ ନେବାକୁ ଆସିଛି । ଏପର୍ଯ୍ୟନ୍ତ କେହି ତୁମକୁ ନିମନ୍ତ୍ରଣ କରି ନାହାନ୍ତି ବୋଲି ରାଗିଛକି? ତମେ ତ ଜାଣ ବାପା ମରି-ଯାଇଛନ୍ତି କେବେଠାରୁ । ମୁଁ ତ ସାନ ପିଲା । ଆମ ଘରେ ଆଉ କିଏ ଅଛି ଯେ ତୁମକୁ ନିମଂତ୍ରଣ କରିବ? ଏବେ ମୁଁ ମା'ଠାରୁ ସବୁ ଶୁଣିବାରୁ ଆସିଲି । ତେବେ ତମ ଦୁହିଁଙ୍କୁ ନ ନେଇ ମୁଁ କଲୁ ଫେରୁନାହିଁ ।"

କୌଣସି ଉତ୍ତର ନାହିଁ । ଶବ୍ଦ ଗୁଡ଼ାକ ଯେପରି ମନ୍ଦିର କାନ୍ଥରେ ବାଜି ଫେରି ଆସୁଛି । ପୁଣି ସେ କହିଲା, "ଅପା, ତୁ ଯେତେ ବଡ଼ଲୋକ ହେଲେ ଆମ ଘରର ଝିଅ । ତୋର କ'ଣ ଦୟା ନାହିଁ? ମୋ ସାଙ୍ଗପିଲାଙ୍କ ଆଗରେ ମୁଁ କହିଛି ଏଇ ଦୀପାବଳୀକୁ ମୋର ଭଉଣୀ ଭିଣୋଇ ନିଶ୍ଚୟ ଆସିବେ । ତମେମାନେ ନ ଗଲେ ସେମାନଙ୍କ ସାମନାରେ ମୁଁ ଆଉ ମୁହଁ ଦେଖାଇ ପାରିବି? ତା' ଅପେକ୍ଷା ବରଂ ମରିଯିବା ଭଲ । ଏବେ ତମେ ଯଦି କଥା ମଧ୍ୟ କହୁନାହଁ ତେବେ ଯାଉଛି ଏହି ଶ୍ରୀଶୈଳରୁ ଡେଇଁପଡ଼ି ମରିଯିବି । ପାପ ତୁମକୁ ଲାଗିବ ।"

ତା'ପରେ ମଧ୍ୟ କିଛି ଉତ୍ତର ନାହିଁ । ସିଦ୍ଧୁ ମନ ଦୁଃଖରେ କାନ୍ଦି କାନ୍ଦି ପାହାଡ଼ ଶିଖରକୁ ଗଲା ସେଇଠାରୁ ଡେଇଁ ପଡ଼ିବ ବୋଲି । ଠିକ୍ ସେତିକିବେଳେ ସେ ଅନୁଭବ କଲା କେହି ତା' କାନ୍ଧ ଧରି ଅଟକେଇ ଦେଲା । ବୁଲାପଡ଼ି ଚାହିଁ ଦେଖିଲା ତା'ର ଏକ ପାଖରେ ଜଣେ ରୂପବାନ ପୁରୁଷ ଓ ଅନ୍ୟ ପଟରେ ଜଣେ ରୂପବତୀ ସ୍ତ୍ରୀ ତା'ର ଦୁଇହାତ ଧରି ତାକୁ ଅଟକାଇଛନ୍ତି ।



ସିଦ୍ଧୁ ପଚାରିଲା, "ଆପଣମାନେ କିଏ ସେ ?"

ତା'ପରେ ସ୍ତ୍ରୀଲୋକ ଜଣକ ମଧୁର ସ୍ୱରରେ କହିଲେ, "ସିଦ୍ଧୁ, ମୁଁ ଯେ ତୋର ଅପା ଭ୍ରମରାମ୍ବା । ଆଉ ସିଏ ତୋର ଭିଣୋଇ ମଲ୍ଲିକାର୍ଜ୍ଜୁନ । ତୁ ତ ଆମକୁ କେବେ ଦେଖିନାହୁଁ, ଚିହ୍ନିବୁ କିପରି ? କେହି ଆମକୁ ତୋ କଥା କହିବାରୁ ଆମେ ଖୋଜି ଖୋଜି ଆସି ଏଇଠି ପହଞ୍ଚିଛୁଁ ।"

ସିଦ୍ଧିରାମର ଆଉ ଆନନ୍ଦ ଦେଖେ କିଏ ? ସେ ପ୍ରଥମେ ଭଉଣୀ ଭିଣୋଇଙ୍କୁ ପ୍ରଣାମ କରି ପକାଇଲା । ସେମାନେ ମଧ୍ୟ ସିଦ୍ଧୁକୁ ନେଇ ତାଙ୍କ ଦୁଇ ପୁତ୍ର ଓ ଗଣମାନଙ୍କ ସହିତ ପରିଚୟ କରାଇ ଦେଲେ । ସିଦ୍ଧୁ ସମସ୍ତଙ୍କୁ ଦୀପାବଳୀ ଉତ୍ସବ ପାଇଁ ନିମନ୍ତ୍ରଣ କରି, ସେମାନଙ୍କଠାରୁ ବିଦାୟ ନେଇ ମନ ଖୁସିରେ ଘରକୁ ଫେରିଲା ।

ଏଣେ ସିଦ୍ଧୁକୁ ନ ପାଇ ତା' ମା' ବ୍ୟସ୍ତ ହୋଇ ପଡ଼ିଲେ । ଭାବିଲେ, "ମୁଁ ସିନା ତାକୁ ଭୁଲାଇବାକୁ ଏସବୁ କଥା କହିଲି । ସେ କ'ଣ ସତରେ ମୋ କଥା ବିଶ୍ୱାସ କରି ସେଠାକୁ ଆଉ ଚାଲିଗଲା କି ?" କିନ୍ତୁ ବାଟରେ ହିଂସ୍ରଜନ୍ତୁ ପୂର୍ଣ୍ଣ ଘୋର ଜଙ୍ଗଲ କଥା ଭାବି ସିଦ୍ଧୁର ମା' ଭୟରେ ଶିହରି ଉଠିଲେ ।

ସିଦ୍ଧୁ ଫେରି ଆସିଲା । ତା' ମା'ଙ୍କର ଆନନ୍ଦ କହିଲେ ନ ସରେ । ସିଦ୍ଧୁ ନିଜର ସମସ୍ତ ଅନୁଭୂତି ମା'ଙ୍କୁ ବର୍ଣ୍ଣନା କରି କହିଲା । ଦୀପାବଳୀ ଦିନ ଦେଖାଗଲା ସେମାନଙ୍କ କୁଟୀର ବଦଳରେ ସେଠାରେ ତିଆରି ହୋଇ ରହିଛି ପ୍ରକାଣ୍ଡ ଅଟ୍ଟାଳିକା । ଧନ, ଦୌଲତ, ଦାସ, ଦାସୀରେ ପୂର୍ଣ୍ଣ । ସେଠାକୁ ଅତିଥି ହୋଇ ଆସିଲେ ନିଜେ ଶିବ, ପାର୍ବତୀ ଓ ତାଙ୍କର ଦୁଇ ପୁତ୍ର ଓ ଗଣମାନେ । ଦୀପାବଳୀ ମହା ସମାରୋହରେ ପାଳିତ ହେଲା । ଗ୍ରାମର ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଦୀପାବଳୀ ପରେ ଭଗବାନ ଶିବ ଓ ଦେବୀ ପାର୍ବତୀ ସିଦ୍ଧୁ ଓ ତା'ର ମା'ଙ୍କୁ କୈଳାସ ନେଇଗଲେ ।

ଶିବଲୀଳାର ଆଉ ଗୋଟିଏ ପ୍ରସଙ୍ଗ ଶୁଣନ୍ତୁ—

ଥରେ ଗୟାସୁର କୈଳାସ ପର୍ବତ ଉପରେ ଆକ୍ରମଣ କଲା । ଶିବ ବିରକ୍ତ ହୋଇ ତାଙ୍କ



ଜଟାରୁ ଗୋଟିଏ କେଶ ଛିଣ୍ଡାଇ ତଳେ ପକାଇ ଦେଲେ। ସେଥିରୁ ଉଦ୍ଭୂତ ହେଲା ଏକ ଭୟଙ୍କର ଦୈତ୍ୟ, ସେ ଗୟାସୁରକୁ ଆକ୍ରମଣ କଲା। ଗୟାସୁର ପ୍ରାଣ ଭୟରେ ଯାଇ ଶିବଙ୍କ ପାଖରେ ଶରଣ ପଶିଲା। ଶିବ ତାଙ୍କୁ ଶରଣ ଦେଲେ।

କିନ୍ତୁ ଏଣେ ଭୟଙ୍କର ମୁଖ ଦୈତ୍ୟ ଚିତ୍କାର କଲା, "ଖାଇବ, ଖାଇବ।"

ଶିବ ଆଦେଶ ଦେଲେ, "ତୁ ନିଜେ ନିଜ ଶରୀରକୁ ଖାଇ ଦେ।"

ଶିବଙ୍କ ଆଦେଶ ମାନି ସେ ନିଜ ଶରୀରକୁ ଖାଇଲା, ଶେଷରେ ରହିଲା କେବଳ ତା'ର ମୁହଁ। ଶିବ ତାକୁ ନାମ ଦେଲେ "କୀର୍ତ୍ତିମୁଖ"। ପୁଣି ତାକୁ ବର ଦେଇ କହିଲେ, "ହେ କୀର୍ତ୍ତିମୁଖ, ତୁ ସମସ୍ତ ଦେବତାଙ୍କ ମସ୍ତକ ଉପରେ ରହି ସେମାନଙ୍କୁ କୀର୍ତ୍ତି ପ୍ରଦାନ କରିବୁ।"

ଆଉ ଗୋଟିଏ ପ୍ରସଙ୍ଗ ଶୁଣନ୍ତୁ—

ପ୍ରାଚୀନ କାଳରେ ଦୁର୍ବାସା ମୁନି ବଦ୍ରିକାଶ୍ରମରେ ତପସ୍ୟା କରୁଥା'ନ୍ତି। ଦିନେ ସେ ହବିଷାନ୍ନରୁ କିଛି ଅଂଶ ନେଇ ହରିଣ ଛୁଆମାନଙ୍କୁ ଖାଇବାକୁ ଦେଉଥା'ନ୍ତି। ଏହି ସମୟରେ ଆକାଶ ମାର୍ଗରେ ଉଡ଼ି ଯାଉଥା'ନ୍ତି ତୁମ୍ବୁରୁ ନାମକ କିନ୍ନର ଓ ତାଙ୍କ ସ୍ତ୍ରୀ। ହରିଣ ଛୁଆଙ୍କୁ ଦେଖି ସେ ଶୁଶୁର ମାରିଲେ। ହରିଣ ଛୁଆମାନେ ଚମକି ପଡ଼ି ଖାଇବା ଅଧା ରଖି ବଣକୁ ପଳାଇଲେ। ଦୁର୍ବାସା ତ ଜନ୍ମରୁ ରାଗୀ। ସେ ରାଗିଯାଇ ତୁମ୍ବୁରୁଙ୍କୁ ଅଭିଶାପ ଦେଲେ, "ତମେ ମାନବ ଜନ୍ମ ନିଅ।"

ଏକଥା ଶୁଣି ତୁମ୍ବୁରୁ ହତାଶ ହୋଇ ତଳକୁ ଓହ୍ଲାଇ ଆସି କହିଲେ, "ମୁନିବର, ମୁଁ ହରିଣଛୁଆଙ୍କୁ ଦେଖି ଖୁସିରେ ଶୁଶୁର ବଜାଇ ଦେଇଥିଲି। ମୋର ଖୁସିଟା ହିଁ ମୋ ପାଇଁ ଅଭିଶାପ ହେଲା। ତେବେ ଏତିକି ମାତ୍ର ଅନୁରୋଧ ଯେ ମୁଁ ଶିବଭକ୍ତ ହୋଇ ଜନ୍ମ ହେବି।" ତୁମ୍ବୁରୁଙ୍କର ଇଚ୍ଛାକୁ ଦୁର୍ବାସା ସ୍ୱୀକାର କରି କହିଲେ, "ତଥାସ୍ତୁ।"

ପରେ ସେ କାଞ୍ଚିପୁରର ଏକ ବୈଶ୍ୟ ପରିବାରରେ ଚିରୁତୋଣ୍ଡ ନାମରେ ଜନ୍ମ ନେଲେ। ତାଙ୍କ ପତ୍ନୀ ମଧ୍ୟ ଅନ୍ୟ ଏକ

ପରିବାରରେ ଜନ୍ମ ନେଲେ । ତାଙ୍କ ନାମ ଥିଲା ଚନ୍ଦ୍ରବେଙ୍ଗନାଥ । କାଳକ୍ରମେ ଦୁହିଁଙ୍କର ବିବାହ ହେଲା । ସେମାନଙ୍କର ଗୋଟିଏ ପୁତ୍ର ଜନ୍ମ ହେଲା । ତା'ର ନାମ ସେମାନେ ରଖିଲେ ଶିରପ୍ପାଲ୍ ।

ଚନ୍ଦ୍ରଚୋଣ୍ଡ୍ର ଶୈବଧର୍ମ ଖୁବ୍ ମାନୁଥା'ନ୍ତି ଆଉ ସର୍ବଦା ଏକାମ୍ରନାଥଙ୍କୁ ପୂଜା କରୁଥା'ନ୍ତି । ସେ ସର୍ବଦା ଶିବଭକ୍ତମାନଙ୍କୁ ଖୁବ୍ ସତ୍କାର କରୁଥା'ନ୍ତି ।

ଦିନେ ତାଙ୍କ ଘରକୁ ଜଣେ ଶିବଭକ୍ତ ଆସିଥା'ନ୍ତି । ଚନ୍ଦ୍ରଚୋଣ୍ଡ୍ର ଯଥାଯଥ ଭାବରେ ସତ୍କାର କରି ତାଙ୍କୁ ସନ୍ତୁଷ୍ଟ କରନ୍ତେ ସେ ଚନ୍ଦ୍ରଚୋଣ୍ଡ୍ର ପରିବାରକୁ ଆଶିର୍ବାଦ ଦେଲେ । ପରେ କହିଲେ, "ବତ୍ସ, ମୁଁ ଶିବଙ୍କୁ ପ୍ରତି ପୂର୍ଣ୍ଣିମାରେ ଆଖୁ ରସରେ ଅଭିଷେକ କରେ । ଆଜି ଯଦି ତୁମେ ପାଞ୍ଚସେର ଆଖୁ ରସ ଦେଇ ପାରନ୍ତ ତେବେ ଆନନ୍ଦର କଥା ହୁଅନ୍ତା ।" ଚନ୍ଦ୍ରଚୋଣ୍ଡ୍ର ଆଖୁ କିଣିବାକୁ ଗଲେ । ପାଞ୍ଚସେର ରସ ପାଇଁ ତ ପୁଣି ଅନେକ ଗୁଡ଼ିଏ ଆଖୁ ଦରକାର । ଆଖୁ ଗୁଡ଼ିକ କିଣି ବାନ୍ଧିଲେ, କିନ୍ତୁ ଆଣିବା କଷ୍ଟ । ଜଣେ ମୂଲିଆ କାହୁଁ ଆସି ତାଙ୍କୁ ସାହାଯ୍ୟ କଲା । ବାକିତକ ନିଜେ ଆଣିଲେ । ଚନ୍ଦ୍ରଚୋଣ୍ଡ୍ର ମୂଲିଆକୁ ପଇସା ଦେବା ବେଳକୁ ମୂଲିଆ ଆଉ ସେଠି ନଥିଲା ।

ତା'ପରେ ସେ ନିଜେ ଆଖୁକୁ କୋହ୍ଲି-ଆରେ ପକାଇ ରସ ବାହାର କରି ଶିବଭକ୍ତଙ୍କୁ ଦେଲେ । ଶିବ ଅଭିଷେକ ମହା ସମାରୋହରେ ସମ୍ପନ୍ନ ହେଲା ।

ଏଣେ କୈଳାସରେ ଶିବଙ୍କ ଦେହରେ ଶ୍ରମଝାଳ ଦେଖି ପାର୍ବତୀ ତା'ର କାରଣ ପଚାରିବାରୁ ଶିବ କହିଲେ, "ମୋ ଭକ୍ତକୁ ସାହାଯ୍ୟ କରିବାକୁ ଯାଇ ମୁଁ ଆଖୁ ବିଡ଼ା ଆଣିଲି, ତେଣୁ ଦେହରୁ ଝାଳ ବୋହୁଛି ।" ପାର୍ବତୀ ଉତ୍ସାହ ସହକାରେ କହିଲେ; "କିଏ ସେହି ମହାନ୍ ଭକ୍ତ ମୁଁ ଟିକିଏ ତାଙ୍କୁ ଦେଖିବି ।"





# ସର୍ବୋଚ୍ଚ ନ୍ୟାୟାଳୟ

ରମାବତୀ ରାଜ୍ୟରେ ସେତେବେଳେ ରାଜୁତି କରୁଥିଲେ ରାଜା ଶୁଭ୍ରାଂଶୁ । ସେ ପିଲାବେଳେ ଗୋଟିଏ ଗୁରୁକୁଳରେ ପାଠ ପଢ଼ିଥିଲେ । ତାଙ୍କ ସ୍ୱଭାବ ଭଲ ଥିଲା ଓ ସେ ନ୍ୟାୟପରାୟଣ ଥିଲେ । ତେବେ ତାଙ୍କର ଗୋଟିଏ ବିଶେଷ ଦୁର୍ବଳତା ଥିଲା । ସେ ରାଣୀଙ୍କ କଥାକୁ କେବେ ଏଡ଼ାଇଦେଇ ପାରୁ ନଥିଲେ । ରାଣୀ ରୂପବତୀ ଓ ବୁଦ୍ଧିମତୀ ଥିଲେ ଠିକ୍, କିନ୍ତୁ ତାଙ୍କ ଭିତରେ କୌଣସି ମହତ୍ତ୍ୱ ବା ଉଦାରତା ନଥିଲା । ତାଙ୍କ କଥା ରକ୍ଷା କରିବାକୁ ଯାଇ ରାଜା ମଧ୍ୟ ଅନେକ ସମୟରେ ଭୁଲ କାମ କରୁଥିଲେ ।

ଏଥିରେ କେହି ଏମିତି ବିଶେଷ ଆପତ୍ତି କରନ୍ତେ ନାହିଁ । କିନ୍ତୁ କାଳ ହେଲା ରାଣୀଙ୍କ ସାନ ଭାଇ ସୁକୁମାର । ସେ ଟୋକା ରାଜାଙ୍କ ନଅରରେ ପଡ଼ିଥାଏ । ଗୁଡ଼ାଏ ଅକର୍ମା ସାମନ୍ତ ଟୋକା ତା' ମିତ୍ର ହୋଇଥାନ୍ତି । ରାଣୀ ସେ ଭାଇଟିକୁ ବହୁତ ସ୍ନେହ କରୁଥାନ୍ତି । ରାଜା ବି ଶଳାର ସବୁ ଆବଦାର ପୂରଣ କରୁଥାନ୍ତି । ଫଳରେ ସୁକୁମାର ଦୁର୍ଦ୍ଦାନ୍ତ ହୋଇ ଯାହା ଇଚ୍ଛା ତାହା କରୁଥାଏ । ଲୋକଙ୍କ ଉପରେ ଜୁଲମ୍ କରୁଥାଏ । ଜୁଆ ଖେଳିବା ପାଇଁ ପଇସା ଅଭାବ ପଡ଼ିଲେ ଦୋକାନ ହାଟକୁ ଯାଇ ଦୋକାନୀମାନଙ୍କଠାରୁ ନୂଆ ନୂଆ କର ଆଦାୟ କରୁଥାଏ । ସମସ୍ତେ ଭାବୁଥିଲେ ସିଏ ଯାହା କରୁଛି ତାହା ପଛରେ ରାଜାଙ୍କ ସମର୍ଥନ ଅଛି । ଅତଏବ ତାକୁ କେହି କିଛି କହି ପାରୁ ନଥାନ୍ତି । ଥରେ ଅଧେ ମନ୍ତ୍ରୀ ରାଜାଙ୍କୁ ତାଙ୍କ ଶଳାର ଦୁଷ୍ଟାମି ବିଷୟରେ ସଚେତନ କରାଇ ଦେବାକୁ ଚେଷ୍ଟା କଲେ । ରାଜା ଶୁଣି ବି ନ ଶୁଣିଲା ଭଳି ରହିଲେ ।

ରାଜ୍ୟର ଗୋଟିଏ ଗାଁରେ ଜୟମଲ୍ଲ ନାମକ ଜଣେ ଯୁବକ ଥାଏ । ଥରେ ସେ ତା'ର ଦୁଇଟି ସୁଠାମ ଘୋଡ଼ା ବିକ୍ରି କରିବାକୁ ରାଜ-ଧାନୀର ହାଟକୁ ନେଇ ଆସୁଛି, ତାକୁ ଦେଖି ପକାଇଲା ସୁକୁମାର । ଜୟମଲ୍ଲର ସୁନ୍ଦର ଘୋଡ଼ା ଦୁଇଟି ଉପରେ ତା'ର ଆଖି ପଡ଼ିଲା । ସେ ରୁକ୍ଷ ଭାବରେ କହିଲା, "ଆରେ ଟୋକା ! ଏ ଘୋଡ଼ା ଦୁଇଟି ମୋର ଦରକାର ।"

ଜୟମଲ୍ଲ ସୁକୁମାରକୁ ଚିହ୍ନି ନଥିଲା । ସୁକୁମାର କଥାର ଢ଼ଙ୍ଗ ତାକୁ ଭଲ ଲାଗିଲା ନାହିଁ । ତେବେ ସେ ନିଜର ବିରକ୍ତି ପ୍ରକାଶ ନ କରି କହିଲା, "ବେଶ୍ ! ଘୋଡ଼ା ଦୁଇଟିର ମୂଲ୍ୟ ଏକ ଶହ ସ୍ୱର୍ଣ୍ଣ ମୁଦ୍ରା । ଦେଇ ନେଇ ପାର !"

"ଚୋପ୍ ! ତୋର ଏତେ ସାହସ ପ୍ରଥମେ ଘୋଡ଼ାର ଦାମ୍ ହାଙ୍କୁଛୁ ? ଘୋଡ଼ା ଧରି ମୋ ପଛେ ପଛେ ଆ ! ଜାଣିଛୁ ତ ଏ ରାଜ୍ୟର ରାଣୀଙ୍କ ଭାଇ ମୁଁ ?"

"ସାବଧାନ ! ଭଦ୍ର ଭାବରେ କଥା କୁହ !" ଜୟମଲ୍ଲ କହିଲା । ସୁକୁମାର ରାଗିଯାଇ ତା' ପାଖକୁ ନିଜ ଘୋଡ଼ା ନେଇ ଯାଇ ତାକୁ ଚାବୁକଣି ପକାଇବାକୁ ଉଦ୍ୟତ ହେଲା । ଜୟମଲ୍ଲ ତା' ହାତ ଧରି ପକାଇ ଘୋଡ଼ା ଉପରୁ ତାକୁ ଠେଲି ପକାଇ ଦେଲା ।

ସୁକୁମାର ତଳେ ପଡ଼ିଯିବାର ଲୋକେ ଦେଖିଲେ, କିନ୍ତୁ କେହି ତା' ପାଖକୁ ଆସିଲେ ନାହିଁ । ସେ ଉଠି ପଡି ଦେହରୁ ବାଲି ଝାଡି ସିଧା ଯାଇ ରାଜାଙ୍କ ପାଖରେ ପହଞ୍ଚିଲା ଓ



କହିଲା, "ଗୋଟାଏ ଚୋରା ମୋତେ ବାଡ଼େଇଲା।" ରାଣୀ ଉଠି ପଡ଼ି ଭାଇକୁ ଆଉଁସି ପକାଇଲେ। ରାଜା କହିଲେ, "ସାଙ୍ଗରେ ଆଠ ଦଶଜଣ ପ୍ରହରୀ ନେଇଯାଇ ତାକୁ ଚିହ୍ନଟ କରି ଧରିଆଣ।"

"ଖାଲି ଧରି ଆଣିଲେ କ'ଣ ହେବ? ଶୂଳରେ ବସାଅ।" ରାଣୀ କହିଲେ।

ମନ୍ତ୍ରୀ କିଛି କହିବା ପୂର୍ବରୁ ରାଜା ରାଣୀ ଉଠି ଚାଲିଗଲେ। ଅଳ୍ପ ସମୟ ଭିତରେ ଜୟମଲ୍ଲ ଧରା ହୋଇ ଆସିଲା। ପ୍ରହରୀ-ସର୍ଦ୍ଦାର ଆସି ରାଜାଙ୍କୁ ପଚାରିଲା, "ବନ୍ଦୀକୁ କ'ଣ କରାଯିବ?" ରାଜାଙ୍କୁ କହିବାକୁ ନଦେଇ ରାଣୀ କହିଲେ, "ଶୂଳୀ!" ପ୍ରହରୀ-ସର୍ଦ୍ଦାର ଚାଲିଗଲା। ରାତିରେ କାହାକୁ ପ୍ରାଣଦଣ୍ଡ ଦେବା ନିଷେଧ। ତେଣୁ ସକାଳ ଯାଏ ଜୟମଲ୍ଲକୁ କାରାଗାରରେ ରଖାଗଲା।

ରାତିରେ ରାଜାଙ୍କ ଆଖିକୁ ନିଦ ଆସିଲା ନାହିଁ। ସେ ଯାହା ଶୁଣିବାକୁ ପାଇଥିଲେ, ସେଥିରୁ ଜୟମଲ୍ଲ ଯେ ନିର୍ଦ୍ଦୋଷ ଏକଥା ସ୍ପଷ୍ଟ ହୋଇଯାଇଥିଲା। ତଥାପି ତା' ପ୍ରାଣଦଣ୍ଡ ବନ୍ଦ କଲେ ରାଣୀ ରାଗିଯିବେ।

ମଝି ରାତିରେ ରାଜା ଉଠି ଯାଇ ମନ୍ତ୍ରୀଙ୍କୁ ଡକାଇଲେ ଓ କହିଲେ, "ମନ୍ତ୍ରିବର! କ'ଣ କଲେ ଜୟମଲ୍ଲ ରକ୍ଷା ପାଇବ ଅଥଚ ରାଣୀଙ୍କ ମନରେ କ୍ଷୋଭ ରହିବ ନାହିଁ?"

"ମହାରାଜ! ଜୟମଲ୍ଲ ରାଣୀ ଓ ସୁକୁମାରଙ୍କୁ କ୍ଷମା ଭିକ୍ଷା କରୁ। ତା'ପରେ ତାକୁ ଛାଡି ଦେବା।"



ଏ ପ୍ରସ୍ତାବ ରାଜାଙ୍କ ମନକୁ ପାଇଲା । ସେ ଓ ମନ୍ତ୍ରୀ ଯାଇ କାରାଗାରରେ ପହଞ୍ଚିଲେ । ମନ୍ତ୍ରୀ ଜୟମଲ୍ଲକୁ କହିଲେ, "ଯୁବକ ! ଯାହା ହେବାର ହୋଇଗଲାଣି । ତମେ କାଲି ଯାଇ ରାଣୀ ଓ ସୁକୁମାରଙ୍କ ପାଖରେ ନିଜର ଔଦ୍ଧତ୍ୟ ଓ ଅସଦ୍ ବ୍ୟବହାର ପାଇଁ କ୍ଷମା ମାଗ । ତମକୁ ପ୍ରାଣଦଣ୍ଡରୁ ଅବ୍ୟାହତି ଦେବା କଥା ବିଚାର କରାଯିବ ।"

ଜୟମଲ୍ଲ ମୃଦୁ ହସ ହସି କହିଲା, "ମନ୍ତ୍ରୀ ମହୋଦୟ ! ତାହାର ଆବଶ୍ୟକତା ନାହିଁ । ମୁଁ ରାଜାଙ୍କ ବିଚାର ବିଷୟରେ ସର୍ବୋଚ୍ଚ ନ୍ୟାୟାଳୟରେ ମୋର ଯାହା କହିବା କଥା କହିବି । ଆଉ ମାତ୍ର କେଇ ଘଣ୍ଟା ବାକି !"

ରାଜା ହସି ପକାଇଲେ ଓ କହିଲେ, "ଯୁବକ ! ତମେ ଭୁଲ କରୁଛ । ମୋ ଆଦେଶ ଉପରେ ହସ୍ତକ୍ଷେପ କରିବ କେଉଁ ନ୍ୟାୟାଳୟ ?"

ଜୟମଲ୍ଲ ଧୀର କଣ୍ଠରେ କହିଲା, "ମହାରାଜ ! ରାଜା ଈଶ୍ୱରଙ୍କ ପ୍ରତିନିଧି ଭାବରେ ରାଜ୍ୟ ଶାସନ କରନ୍ତି ବୋଲି କୁହାଯାଏ । ଆପଣ ମୋର ପ୍ରାଣଦଣ୍ଡ ଦେଇଛନ୍ତି । ମୁଁ ଏହା ବିରୁଦ୍ଧରେ ସିଧା ଯାଇ ଭଗବାନଙ୍କ ପାଖରେ ଅଭିଯୋଗ କରିବି । ବିନା ଅପରାଧରେ ରାଣୀ ଓ ତାଙ୍କ ଭାଇ ପାଖରେ ମୁଣ୍ଡ ନୁଆଁଇବି କାହିଁକି ?"

ରାଜା ଚମକି ଉଠିଲେ । ବାସ୍ତବିକ, ଗୋଟାଏ ନିର୍ଦ୍ଦୋଷ ଲୋକକୁ ପ୍ରାଣଦଣ୍ଡ ଦେଇ ସେ ଭଗବାନଙ୍କ ବିଚାରରୁ ମୁକୁଳି ଯାଇ ପାରିବେ କି ? ସେହି ମୁହୂର୍ତ୍ତରେ ତାଙ୍କର ଜ୍ଞାନୋଦୟ ହେଲା । ସେ ଜୟମଲ୍ଲକୁ ମୁକ୍ତି ଦେଲେ ଓ ମନ୍ତ୍ରୀଙ୍କୁ କହିଲେ, "ମନ୍ତ୍ରୀବର ! ଏଣିକି ସତ୍ୟହିଁ ହେବ ମୋର ନିଷ୍ପତ୍ତିର ମାପକାଠି, ରାଣୀ ନୁହନ୍ତି କି ଶଳା ନୁହେଁ !"

"ମହାରାଜ ଠିକ୍ କହିଛନ୍ତି ।" ମନ୍ତ୍ରୀ ତାଙ୍କୁ ଉତ୍ସାହ ଦେଇ କହିଲେ ।





# ଦାତା ଓ ମିତ୍ର

ବରେନ୍ଦ୍ର, ଯଶପୁରର ବିଖ୍ୟାତ ବ୍ୟବସାୟୀ ।

ଦିନେ ତାଙ୍କର ପିଲାଦିନର ସାଙ୍ଗ ଶେଷାଦ୍ରି ତାଙ୍କୁ ଦେଖା କରିବାକୁ ଆସିଲେ । ସେ କହିଲେ, "ବନ୍ଧୁ, ମୁଁ ମୋ ଜୀବନରେ ବହୁତ ଧକ୍କା ଖାଇଛି । ସମସ୍ତେ ମତେ ଠକିଛନ୍ତି । ମୋର ଅବସ୍ଥା ଏତେ ଖରାପ ଯେ ମୋ ପରିବାର ଚଳାଇବାକୁ ମଧ୍ୟ ମୁଁ ଅକ୍ଷମ । ତୁମେ ଯଦି ମୋତେ ସାହାଯ୍ୟ କରନ୍ତ ମୁଁ ଏ ସଙ୍କଟରୁ ଉଦ୍ଧାର ପାଇଯା'ନ୍ତି ।"

ଶେଷାଦ୍ରି ପିଲାବେଳୁ ଲାଜୁଆ, ଶାନ୍ତଶିଷ୍ଟ, ମିତଭାଷୀ । କିନ୍ତୁ ବରେନ୍ଦ୍ର ପିଲାବେଳୁ ଦୁଷ୍ଟ, ଆଉ ସବୁ ଦୁଷ୍ଟାମି କରି ଶେଷରେ ଶେଷାଦ୍ରିଙ୍କୁ ଦୋଷୀ ସାବ୍ୟସ୍ତ କରନ୍ତି । ଶେଷାଦ୍ରି ବନ୍ଧୁର ସମସ୍ତ ଉପଦ୍ରବ ସହ୍ୟ କରି ଯାଉଥା'ନ୍ତି, ବଡ଼ ହେବାରୁ ସେମାନଙ୍କ ଭିତରେ ପରିପକ୍ୱତା ଦେଖାଦେଲା । ବରେନ୍ଦ୍ର ଦୁଷ୍ଟାମି ଛାଡି କ୍ରମେ ପାଠ ଓ ଘର କାମରେ ମନ ଦେଲେ । କିଛି ବର୍ଷ ପରେ ବରେନ୍ଦ୍ର ସହରକୁ ଯାଇ ପିଲାପିଲି ଧରି, ବ୍ୟବସାୟ କରି ରହିଲେ । କିନ୍ତୁ ଶେଷାଦ୍ରି ଗ୍ରାମରେହିଁ ପଡ଼ି ରହିଲେ ।

ଶେଷାଦ୍ରିଙ୍କ କଥା ଶୁଣି ବରେନ୍ଦ୍ର କହିଲେ, "ତୁମପରି ବନ୍ଧୁକୁ ସାହାଯ୍ୟ କରିବ ନାହିଁ ତ ଆଉ କାହାକୁ କରିବି? ତମେ ଘର ଜମି ସବୁ ବିକି କରି କିଛି ଧନ ଧରି ସହରକୁ ଆସିଯାଅ । ଏଇଠି ରହିବ । ମୁଁ ତମକୁ ମୋ ବ୍ୟବସାୟର ଜଣେ ଅଂଶୀଦାର କରିନେବି ।"

ଶେଷାଦ୍ରି ଗ୍ରାମକୁ ଯାଇ ଅଳ୍ପଦିନ ମଧ୍ୟରେ ସବୁ ବିକି କରିଦେଇ ପିଲାପିଲିଙ୍କୁ ଧରି ସହର ଚାଲି ଆସିଲେ । ବରେନ୍ଦ୍ର ତା' ପାଇଁ ଘରଟିଏ ଦେଲେ ଓ ମାସିକ ଘର ଖର୍ଚ୍ଚ ହଜାରେ ଟଙ୍କା କରି ଦେଉଥା'ନ୍ତି । ଶେଷାଦ୍ରିଙ୍କ



ପରିବାର ଲୋକେ ବରେନ୍ଦ୍ରଙ୍କୁ ଜଣେ ଦେବତା ଭଳି ମାନୁଥା'ନ୍ତି ।

ଦିନେ ବରେନ୍ଦ୍ର ଶେଷାଦ୍ରିଙ୍କୁ କହିଲେ, "ବନ୍ଧୁ, ଭାବନାହିଁ ଯେ ତମେ ମୋ ପାଖରେ ଚାକିରି କରୁଛ । ତମେ ମୋ ଅଂଶୀଦାର । ଯଦି ମୋ ବ୍ୟବହାର ବା କଥାବାର୍ତ୍ତାରେ କେଉଁଠି ଭୁଲ ଦେଖ ତେବେ ମୋତେ ଜଣାଇଦେବ ।"

କିନ୍ତୁ ଶେଷାଦ୍ରି କେବେ ଭୁଲରେ ମଧ୍ୟ ବରେନ୍ଦ୍ରଙ୍କୁ କୌଣସି କଥାରେ ରାଗୁ ନଥିଲେ, ବରଂ ସର୍ବଦା ବିନୀତ ବ୍ୟବହାର କରୁଥା'ନ୍ତି ।

ମଣିଷ ଜୀବନର ଭଲ ଓ ଖରାପ ଦୁଇଦିଗ ବିଷୟରେ ଶେଷାଦ୍ରି ଥିଲେ ବହୁତ ସଚେତନ । ତେଣୁ ନଗରର ଅନେକ ଲୋକଙ୍କୁ ସେ ସେମାନଙ୍କର ସମସ୍ୟା ସବୁ ସମାଧାନ ଦିଗରେ ସାହାଯ୍ୟ କରୁଥା'ନ୍ତି । ଅତି ଅଳ୍ପ ସମୟରେ ସେ ନିଜର ସଦ୍‌ଗୁଣ ଓ ବୁଦ୍ଧି ଯୋଗୁ ଜନପ୍ରିୟ ହୋଇ ଉଠିଲେ ।

ବରେନ୍ଦ୍ର ଏସବୁ ଶୁଣି ଟିକିଏ ଆଶ୍ଚର୍ଯ୍ୟ ହେଲେ ଓ ଦିନେ କହିଲେ, "ମିତ, ମୁଁ ଜାଣି ନଥିଲି କି ତୁମ ଭିତରେ ଏତେ ଗୁଣ ଥିଲା! ତମେ ମୋର ତ୍ରୁଟି ସବୁକୁ ସୁଧାରିବା ପାଇଁ କାହିଁ କେବେ ତ କିଛି କହୁନାହିଁ ?"

"ତୁମ ଭିତରେ ସେମିତି କିଛି ତ୍ରୁଟି ଥିଲେ ନିଶ୍ଚୟ କହନ୍ତି ।" ଶେଷାଦ୍ରି କହିଲେ ।

ଶେଷାଦ୍ରିର କଥା ଶୁଣି ବରେନ୍ଦ୍ରଙ୍କ ମନ ଗର୍ବରେ ଫୁଲି ଉଠିଲା ।

ଥରେ ଗୋଟିଏ ଘଟଣା ଘଟିଲା । ବରେନ୍ଦ୍ରର ବଡ଼ ପୁଅ ଶେଖର ଜଣେ ଗରିବ ଘରର ଝିଅକୁ ବିବାହ କରିବା ପାଇଁ ମନ କଲା । କିନ୍ତୁ ବରେନ୍ଦ୍ର ସେ ବିବାହରେ ଅନୁକୂଳ ମତ ଦେଲେ ନାହିଁ । ଶେଖର ଘର ଛାଡ଼ି ଚାଲିଯିବାର ଧମକ ଦେଲା ।

ଏଇ କଥା ଉପରେ ଦିନେ ବରେନ୍ଦ୍ର ଶେଷାଦ୍ରିଙ୍କୁ କହିଲେ, "ଶେଖର ଘର ଛାଡ଼ି ଚାଲିଯିବାକୁ ଚାହୁଁଛି ତ ଚାଲିଯାଉ । ଥରେ ବାହାରେ ଯାଇ କଷ୍ଟ ପାଇଲେ ବୁଝିବ, ବାପା ପଇସାରେ ବାହାଦୁରି ଦେଖାଇବାର ଅର୍ଥ ।"

କିନ୍ତୁ ଶେଷାଦ୍ରି ନୀରବ ରହିଲେ ।

ସେହି ସହରରେ ଅନ୍ୟ ଜଣେ ବିଖ୍ୟାତ ଧନୀ ବ୍ୟବସାୟୀ ଥା'ନ୍ତି । ତାଙ୍କ ନାମ ଧନଗୁପ୍ତ । ତାଙ୍କ ଘରେ ମଧ୍ୟ ସେହି ଏକାହିଁ ସମସ୍ୟା । କିନ୍ତୁ ଧନଗୁପ୍ତ ଗରିବ ଝିଅଟିକୁ ବୋହୂ କରି ଘରକୁ ନେଇ ଆସିଲେ । ସେ ଏପରି କାହିଁକି କଲେ ବୁଝିବା ପାଇଁ ବରେନ୍ଦ୍ର ଧନଗୁପ୍ତଙ୍କ ଘରେ ଯାଇ ପହଞ୍ଚିଲେ ।

ଧନଗୁପ୍ତ କହିଲେ, "ଦେଖ ଭାଇ, ଥରେ ମନ ଫାଟିଗଲେ ତାକୁ ଯୋଡ଼ିବା ବଡ଼ କଷ୍ଟ । ତମେ ଯଦି ପୁଅ ବୋହୂଙ୍କୁ ସ୍ୱୀକାର କରିନେବ ତ ସେମାନେ ଜୀବନ ସାରା କୃତଜ୍ଞ ହୋଇ ରହିବେ । ତୁମର ସେବା କରିବେ । କିନ୍ତୁ ଏବେ ଧର ତୁମ ପୁଅ ଘରଛାଡ଼ି ଚାଲିଯିବ; ତମେ ଯଦି ତମ ଜିଦ୍‌ରେ ଅଟଳ ରହିବ, ହେଲେ ତା' ମା'ର ମନ ଭାଙ୍ଗି ପଡ଼ିବ । ଏଣେ ପୁଅର ମନ ଭାଙ୍ଗିବ । ଯଦି ସୁଖଶାନ୍ତି ନ ମିଳିଲା ତେବେ ଏତେ ଧନ ସମ୍ପତ୍ତି ଥାଇ କ'ଣ ଲାଭ ?"

ଧନଗୁପ୍ତଙ୍କ କଥା ଶୁଣି ବରେନ୍ଦ୍ରଙ୍କ ମନ ହାଲୁକା ହୋଇଗଲା । ସେ କହିଲେ, "ଭାଇ ଧନଗୁପ୍ତ, ତମେ ଖୁବ୍ ବିଚାରବନ୍ତ ଲୋକ । ବିଚାର ପରାମର୍ଶ ଯୋଗୁ ଜନପ୍ରିୟ ହୋଇଥିବା ମୋର ବନ୍ଧୁ ଶେଷାଦ୍ରି ମଧ୍ୟ ଏଭଳି କଥା ଦିନେହେଲେ ମୋତେ କହିନାହିଁ ।"

ଧନଗୁପ୍ତ ଆଶ୍ଚର୍ଯ୍ୟ ହୋଇ କହିଲେ, "ଇଏ କ'ଣ କହୁଛ ? ଏ ବିଚାର ତ ମୋର ନୁହେଁ । ଏହା ତ ଶେଷାଦ୍ରିଙ୍କର ପରାମର୍ଶ ।"



ଧନଗୁପ୍ତଙ୍କ କଥା ଶୁଣି ବରେନ୍ଦ୍ରଙ୍କର ମଥା ଘୂରିଗଲା । ସେ ତୁରନ୍ତ ଘରକୁ ଫେରି ଆସିଲେ । ସେ ଚାହୁଁଥିଲେ ସଙ୍ଗେ ସଙ୍ଗେ ଶେଷାଦ୍ରିଙ୍କୁ ଡାକି ପଚାରିବେ । ପୁଣି ଭାବିଲେ, "ଶେଷାଦ୍ରି ଅତି ଗରିବ ଅବସ୍ଥାରେ ତାଙ୍କ ପାଖକୁ ଆସିଥିଲା । ତା' ମନରେ ଆଉ ଈର୍ଷ୍ୟା ଭାବ ହୋଇନାହିଁ ତ ? ସେ ସମସ୍ତଙ୍କୁ ସତ୍ ପରାମର୍ଶ ଦେଉଛି କିନ୍ତୁ ତାଙ୍କର କିଛି ପରାମର୍ଶ ଦରକାର ହେଲେ ନୀରବ ରହିଯାଏ କାହିଁକି ?" ଏହରି ଭାବି ତାଙ୍କ ମନ ବହୁତ ବ୍ୟସ୍ତ ଥାଏ । ଦୁଇଦିନ ପରେ ତାଙ୍କର କୁଳଗୁରୁ ସ୍ୱାମୀ ସଦାନନ୍ଦ ଆସି ପହଞ୍ଚିଲେ । ସେ ଯେତେଦିନ ରହନ୍ତି ବରେନ୍ଦ୍ର ବସି ମନଦେଇ ତାଙ୍କର

ସେବା ସତ୍କାର କରନ୍ତି ଓ ନିଜର ସମସ୍ୟା ସବୁ ଉପସ୍ଥାପିତ କରନ୍ତି । ଏଥରକ ସେ ପୁଅ କଥା ଓ ଶେଷାଦ୍ରିଙ୍କର ଆଶ୍ଚର୍ଯ୍ୟ ବ୍ୟବହାର କଥା କହିଲେ ।

ସଦାନନ୍ଦ କହିଲେ, "ତମେ ଯାହା ଭାବଛ ତାହା ଠିକ୍ ନୁହେଁ । ଶେଷାଦ୍ରି ହିଁ ମୋ ପାଖକୁ ଖବର ପଠାଇଥିଲା ଆଜି ଏଠାକୁ ଆସିବାକୁ । କାରଣ ତମେ କୌଣସି ସମସ୍ୟାରେ ପଡ଼ିଛ ।"

ବରେନ୍ଦ୍ର ରାଗ ଓ ଦୁଃଖରେ କହିଲେ, "ସ୍ୱାମୀଜୀ, ଯେଉଁ ସମସ୍ୟା ସେ ନିଜେ ସମାଧାନ କରି ପାରିଥା'ନ୍ତା, ସେଥିପାଇଁ ସେ ଆପଣଙ୍କୁ କାହିଁକି ଡାକି ପଠାଇଲା ?"

ସଦାନନ୍ଦ ହସି ହସି କହିଲେ, "ତମେ ଯେତେବେଳେ ବଡ଼ ଧନୀ ସେତେବେଳେ ସେ ଗରିବ ହୋଇ ତୁମ ପାଖକୁ ଆସିଥିଲା । ତମେ ତାକୁ ସାହାଯ୍ୟ କରି ତା'ର ଅବସ୍ଥାର ପରିବର୍ତ୍ତନ କରିଦେଇଛ । ସେଥିପାଇଁ ସେ ସଙ୍କୋଚ କରି କିଛି କହେନାହିଁ ।"

ବରେନ୍ଦ୍ର ରାଗି ଯାଇ କହିଲେ, "ସାହାଯ୍ୟ ନେବାବେଳେ ତ ସଙ୍କୋଚ କଲାନାହିଁ ଆଜି ପରାମର୍ଶ ଦେବାବେଳେହିଁ ସଙ୍କୋଚ କରୁଛି ?"

"ତୁମେ ତାହାର ସାହାଯ୍ୟକାରୀ ହୁଅ ବା ଦାତା ହୁଅ କିନ୍ତୁ ସେ ଯଦି ବନ୍ଧୁ ଭାବରେ ତୁମକୁ ପରାମର୍ଶ ଦେଇ ନ ପାରିଲା ସେଇଟା ତା'ର ନୁହେଁ, ତୁମର ଦୋଷ । ତୁମେ ହେଇ ପୂର୍ବ ସମ୍ପର୍କ ରକ୍ଷା ପାରୁନାହଁ ବୋଲି ସେ ସଙ୍କୋଚ କରୁଛି ।" ସଦାନନ୍ଦ କହିଲେ ।

କ୍ରମେ ବରେନ୍ଦ୍ର ବୁଝିଲେ କି ସେ ଶେଷାଦ୍ରି ସହିତ ଦାତା ବା ସାହାଯ୍ୟକାରୀ ଭାବରେ ବ୍ୟବହାର କରିଛନ୍ତି, ବନ୍ଧୁ ଭାବରେ ନୁହେଁ । ସେ ନିଜର ଭୁଲ୍ ବୁଝିପାରି ଗୁରୁଙ୍କୁ ପ୍ରଣାମ କରି କହିଲେ, "ଆପଣଙ୍କ ଦୟାରୁ ଆଜି ମୋର ଆଖି ଖୋଲିଗଲା ।"

ତା' ପରଠାରୁ ଦୁହେଁ ପିଲାବେଳ ପରି ମିତ୍ର ଭାବରେହିଁ ଚଳିଲେ ।



# ମିତବ୍ୟୟୀ

ଧୀରଜ ଥିଲା ସ୍ୱଭାବତଃ ବଦଖର୍ଚ୍ଚୀ । ହାତରେ ପଇସାଟିଏ ରହେନାହିଁ । ତେଣୁ ସେ ଭାବିଲା ଏଥିପାଇଁ କିଛି ଉପାୟ କରିବା ଦରକାର । ସେ ତା'ର ବନ୍ଧୁ ଶ୍ରୀନାଥକୁ ଏକଥା କହିଲା । ଶ୍ରୀନାଥ ତାକୁ ଗୋଟିଏ ଛୋଟ ମୁହଁଭୁଙ୍ଗା ଘଡ଼ି ଦେଇ କହିଲା, "ଏଇଥିରେ ସବୁଦିନେ କିଛି କିଛି ପଇସା ପକା ।"

ଧୀରଜ ପଇସା ପକାଉଥାଏ । ଦିନେ କିଛି ଦରକାର ହେବାରୁ ମାଟି ଘଡ଼ିଟାକୁ ଭାଙ୍ଗି ଦେଇ ପଇସା ନେଇ ଖର୍ଚ୍ଚ କରିଦେଲା । କିଛିଦିନ ପରେ ଶ୍ରୀନାଥ ଆସିଲା ମାଟିଘଡ଼ି ଦେଖିବାକୁ । କିନ୍ତୁ ଘଡ଼ିର ଚିହ୍ନବର୍ଣ୍ଣ ନାହିଁ । ଧୀରଜ କହିଲା, "ଭାଇ, ଜରୁରୀ ଦରକାର ଯୋଗୁଁ ଖର୍ଚ୍ଚ କରିଦେଲି ।" ତା'ପରେ ଶ୍ରୀନାଥ ଗୋଟିଏ ଲୁହାର ଛୋଟ ବାକ୍ସ ଆଣି ସେଥିରେ ଟଙ୍କା ପକାଇବାକୁ କହିଲା ଓ ବାକ୍ସର ଚାବିଟି ଘର ପାଖ ବଗିଚାରେ ପୋତିଦେଲା ।

ଶ୍ରୀନାଥ କିଛିଦିନ ପରେ ଆସି ଦେଖିଲା ଧୀରଜ ବଗିଚା ଯାକ ଖୋଳି ଚାଲିଛି । ଶ୍ରୀନାଥକୁ ଦେଖି କହିଲା, "ଭାଇ, ଟଙ୍କା ଜରୁରୀ ଦରକାର । ଚାବି ଖୋଜୁଛି ।"

ଶ୍ରୀନାଥ କହିଲା, "ଟିକେ ଲଜ୍ଜା ନାହିଁ? ଯେତେ ଚେଷ୍ଟା କଲେ ବି ତୋର ଅଭ୍ୟାସର ପରିବର୍ତ୍ତନ ହେଉନାହିଁ । ଚାବି ସେଠାରେ ନାହିଁ, ମୋ ପାଖରେ ଅଛି । ଆଉ ମୁଁ ଦେବିନାହିଁ । ତୁ ଅନ୍ୟ କୌଣସି ପ୍ରକାରେ ଘର ଚଳାଇ ନେ ।"

ଅଳ୍ପ ହସି ଧୀରଜ କହିଲା, "ଭାଇ, ମୋ ହାତରେ ପଡ଼ି ମୋତେ ଦିନେ ନା ଦିନେ ମିତବ୍ୟୟୀ ହେବାକୁହିଁ ପଡ଼ିବ, ସନ୍ଦେହ ନାହିଁ । ଆଉ କିଛି ଉପାୟ ନାହିଁ ।"





# ଯେସାକୁ ତେସା

ଆଦିବାସୀ ଗ୍ରାମରେ ସୁଦାମ ନାମକ ଚାଷୀଟିଏ ଥାଏ। ତା'ର ସ୍ତ୍ରୀ ମରିଯାଇଥାଏ। ଲଚ୍ଛୁ ନାମରେ ପୁଅଟିଏ ଥାଏ। ପୁଅଟି ଏତେ ବୁଦ୍ଧିଆ ନୁହେଁ। ପୁଅଟି ବଡ ହୋଇ ବାହା ହେଲା। ବୋହୁଟି କିନ୍ତୁ ଭାରି ବୁଦ୍ଧିଆ, ତା' ନାମ ଶୀଳା।

ଦିନେ ଲଚ୍ଛୁ ବାଡ଼ିରେ ବସି କାଠ କାଟୁଛି, ତିନିଜଣ ଭୟଙ୍କର ମୋଟା ମୋଟା ଲୋକ ଆସି ତାକୁ କହିଲେ, "ଭାଇ, ତୁମକୁ ଆମ ରାଜା ଡକେଇ ପଠେଇଛନ୍ତି। ସେ ସାତ ସମୁଦ୍ରର ରାଜା। ତୁମକୁ ଆମ ସହିତ ଯିବାକୁ ହେବ।"

ଲଚ୍ଛୁ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତୁମ ରାଜାଙ୍କର ମୋ ପାଖରେ କ'ଣ କାମ ଅଛି?"

ସେମାନେ କହିଲେ, "ରାଜା ଶୁଣିଛନ୍ତି ତମେ ଏ ରାଜ୍ୟରେ ସବୁଠାରୁ ବୁଦ୍ଧିମାନ ଲୋକ। ତେଣୁ ବୋଧହୁଏ ସେ ତୁମକୁ ତାଙ୍କ ଦରବାରରେ ରଖିବାକୁ ଚାହାନ୍ତି।"

"ଦେଖ ଭାଇ, ବୁଦ୍ଧି ଯୋଗୁ ତ ମୋ ବାପା ପ୍ରସିଦ୍ଧ। ସେ ଟିକିଏ କ୍ଷେତରୁ ଆସିଯା'ନ୍ତୁ ତମେମାନେ ତାଙ୍କ ସହ କଥାବାର୍ତ୍ତା କରିବ।" ଲଚ୍ଛୁ କହିଲା।

"ଆଚ୍ଛା, ଆଚ୍ଛା, ତେବେ ତ ବେଶ୍ ହେଲା। ଦୁହେଁ ଗଲେ ତ ଦରବାରରେ ଚାକିରି ପାଇବ। ଦେଖ, ଆମର ସମୟ ନାହିଁ। ତମେ ତୁମ ବାପାଙ୍କୁ ଧରି କାଲି ସକାଳେ ନଦୀ ଘାଟକୁ ଆସିଯିବ। ସେଠାରେ ଆମେ ନୌକା ରଖି ତୁମ ଦୁହିଁଙ୍କ ଅପେକ୍ଷାରେ ଥିବୁ।" ତିନିଜଣଙ୍କ ମଧ୍ୟରୁ ଜଣେ କହିଲା।

ତା'ପରେ ସେମାନେ ଚାଲିଗଲେ।

ସେଦିନ ରାତିରେ ଲଚ୍ଛୁ ତା' ବାପା ସୁଦାମକୁ ସବୁ କଥା କହିଲା। ଶେଷରେ କହିଲା,

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ



"ବାପା, ଏହା ତ ଏକ ସୁବର୍ଣ୍ଣ ସୁଯୋଗ । କାଠକଟା, ମାଛିଧରା ଅପେକ୍ଷା ଏକାବେଳେ ଦରବାରରେ ଚାକିରି ପାଇବା! ବାଃ କି ମଜା ।"

"ଆଚ୍ଛା ଲଟୁ, ସେମାନେ ରାଜାଙ୍କର କୌଣସି ଚିଠି ସାଥିରେ ଆଣିଥିଲେ ?" ସୁଦାମ ପଚାରିଲା ।

"ନା ତ! ତେବେ ସେଥିରେ କ'ଣ ଅଛି ? ସକାଳେ ତ ଆମେ ଘାଟ ପାଖରେ ପହଞ୍ଚି ଯିବା ଓ ନୌକା ଚଢ଼ି ରାଜାଙ୍କ ପାଖକୁ ଯିବା! ଅସୁବିଧା କ'ଣ ?" ଲଟୁ କହିଲା ।

"ମୁଁ ଏତେବାଟ ଚାଲିକରି ଯାଇପାରିବି ନାହିଁ । ତୁ ଶ୍ରମ ଲାଘବ କରିବାର କିଛି ଉପାୟ କଲେ ମୁଁ ଯାଇ ପାରେ ।" ଏତିକି କହି ସୁଦାମ ଗୋଡ଼ ହାତ ଲମ୍ବାଇ ଶୋଇଗଲା ।

ତା'ପରେ ଲଟୁ ଶୀଲକୁ ସବୁକଥା ଗପିଲା; ପୁଣି ପଚାରିଲା, "ବାପାଙ୍କୁ ଘାଟ ପାଖକୁ ନେବାର ଉପାୟ କହିପାରିବ ?"

"ବହୁତ ସହଜ ଉପାୟ ଅଛି! ତମେ ଚାଲିବେଳେ ଗଳ୍ପ ବା କାହାଣୀ କହି କହି ରାସ୍ତାରେ ଯିବ । ଚାଲିବାର ଶ୍ରମ ବାଧିବ ନାହିଁ ।" ଶୀଲ କହିଲା ।

ସକାଳୁ ଉଠି ବାପ ପୁଅ ଦୁହେଁ ଅଳ୍ପ କିଛି ଖାଇ ନେଇ ନଦୀ ଘାଟ ଆଡ଼କୁ ଚାଲିଲେ । ବାଟରେ ଲଟୁ କାହାଣୀ ଶୁଣାଇଲା । ବହୁତ ଶୀଘ୍ର ସେମାନେ ସେଠାରେ ଯାଇ ପହଞ୍ଚିଗଲେ ।

ସେଠାରେ ଦେଖିଲେ ନୌକାଟିଏ ବନ୍ଧା ହୋଇଛି ଓ ସେହି ତିନିଜଣ ଲୋକ ଅପେକ୍ଷା କରିଛନ୍ତି ।

"ଲଟୁ, ଏ ନୌକା ତ ରାକ୍ଷସମାନଙ୍କର ପରି ଲାଗୁଛି !" ସୁଦାମ ପଚାରିଲା ।

"ଆମ ନୌକାମାନଙ୍କ ମଧ୍ୟରୁ ଏଇଟି କ୍ଷିପ୍ର ଗତିରେ ଚାଲେ ବୋଲି ରାଜା ଏଇଟି ଆମ ସହିତ ପଠାଇଛନ୍ତି ।" ସେମାନଙ୍କ ମଧ୍ୟରୁ ଜଣେ କହିଲା ।

ବାପ ପୁଅ ଦୁହେଁ ନୌକାରେ ବସିବା ପରେ ନୌକା ଜୋରରେ ଚାଲିଲା । କିଛି ସମୟ ପରେ ଏହା ଏକ ଜନମାନବହୀନ ଦ୍ୱୀପରେ ଲାଗିଲା । ସେଠାରେ ଗଛଲତା



ନାହିଁ । ମରୁଭୂମି ପରି ପଡ଼ି ରହିଛି । ବାପ ପୁଅ ଦୁହେଁ ଭଲ ଭାବରେ ଜାଣିଗଲେ ଯେ ସେମାନେ ରାକ୍ଷସମାନଙ୍କ ହାବୁଡ଼ରେ ପଡ଼ିଛନ୍ତି । କିନ୍ତୁ କିଛି କରିବାର ଉପାୟ ନାହିଁ ।

ସେ ଭୀଷଣ ଲୋକ ତିନୋଟି ଏମାନଙ୍କୁ ନେଇ ରାକ୍ଷସ ରାଜାଙ୍କ ପାଖରେ ହାଜର କରାଇଲେ । ରାଜା ଥିଲେ ଦେଖିବାକୁ ଆହୁରି କୁତ୍ସିତ କଦାକାର ।

"ଆମକୁ ଆପଣ କାହିଁକି ଡ଼କେଇଥିଲେ ?" ସୁଦାମ ରାଜାଙ୍କୁ ପଚାରିଲା ।

"ସେମିତି କିଛି ବଡ଼ କଥା ନୁହେଁ । ତେବେ ଆମର ଏକ ବଡ଼ ହାଣ୍ଡି ଅଛି । ତା' ତଳେ ଚୁଲିରେ ଟିକେ ନିଆଁ ଧରେଇ ଦେବ । ଆମେ କେହି ପାରୁନାହୁଁ । ହଁ, କରିଦେବ ତ ଭଲ, ନ ହେଲେ ଏଠୁ ଜୀବନ ନେଇ ଆଉ ଫେରିବ ନାହିଁ ।" ରାଜା କହିଲେ ।

"ପ୍ରଥମେ ଆମକୁ ହାଣ୍ଡି ଓ ଚୁଲି ଦେଖାଇ ଦିଅନ୍ତୁ । ପରେ ଆମେ ଯାହା କରିବୁ ।" ସୁଦାମ କହିଲା ।

ରାଜାଙ୍କ ଆଜ୍ଞାରେ କେତେକ ରାକ୍ଷସ ସେମାନଙ୍କୁ ଗୋଟିଏ ବଡ଼ ଘରକୁ ନେଇଗଲେ । ସେଠାରେ ଏକ ବିରାଟ ସୁସଜ୍ଜିତ ହାଣ୍ଡି ଚୁଲି ଉପରେ ବସିଛି । ଚୁଲିରେ କେହି ନିଆଁ ଧରାଇ ପାରୁ ନାହାନ୍ତି । ସୁଦାମ ଓ ଲଟୁ ଭିତରେ ରହିଲେ ଓ ରାକ୍ଷସମାନଙ୍କୁ ବାହାରି ଯିବାକୁ କହି ଭିତରୁ ଦ୍ୱାର ବନ୍ଦ କଲେ ।

ତା'ପରେ ସୁଦାମ ଲଟୁକୁ କହିଲା, "ଚିହ୍ନି ପାରୁଛୁ ? ଏହା ହେଉଛି ଅକ୍ଷୟ ପାତ୍ର । ଆମ ରାଜାଙ୍କର ଥିଲା । ଯେତେ ଖାଇଲେ ସରିବ ନାହିଁ । ରାକ୍ଷସମାନେ ଚୋରି କରି ଆଣିଛନ୍ତି । ଏବେ ଆମେ ଏମାନଙ୍କ ହାବୁଡ଼ରୁ କିପରି ରକ୍ଷା ପାଇବା ?"

ଦୁହେଁ ବସି ଚିନ୍ତା କଲେ । ସୁଦାମ କହିଲା, "ଉପାୟ କିଛି ମୁଁ ନିଶ୍ଚୟ କରିବି ।" ତା'ପରେ ସେ ରାକ୍ଷସମାନଙ୍କୁ ଡାକି କହିଲା, "ତମେମାନେ ଯାଇ ଆମ୍ବ, ତନ୍ତୁଳ, ଜାମୁ, ଦେବଦାରୁ, ଶାଳ, ବର, ପୋଲଙ୍ଗ ଇତ୍ୟାଦି ଗଛର କାଠ ନେଇ ଆସ । ଆମେ ଚେଷ୍ଟା



କରିବା । ଆଉ ଝକମକ ପଥର ଓ କିଛି ଲୁହାର ଗୁଣ୍ଡ ମଧ୍ୟ ଆଣିବ ।"

ରାକ୍ଷସମାନେ ଯାଇ କାଠ ବିଷୟରେ ରାଜାକୁ କହିବାରୁ ସେ କହିଲେ, "ତମେମାନେ ଏତେ ବୋକା ? ଆମ ରାଜ୍ୟ ଏଇ ଦ୍ୱୀପଟିରେ ଗଛଲତା କିଛି ନାହିଁ । ମରୁଭୂମି ପରି ପଡ଼ିଛି । ଏତେ କାଠ ମୁଁ କାହୁଁ ଆଣିବି ?"

ଠିକ୍ ସେତିକିବେଳେ ସୁଦାମ ଆସି ରାଜାଙ୍କୁ କହିଲା, "ମହାରାଜ, ଆମ ଦେଶରେ ଏସବୁ ସହଜରେ ମିଳିବ । ଆପଣ ସେଠାରୁ ଶୀଘ୍ର ନେଇ ଆସନ୍ତୁ ।"

ରାଜା ତତ୍କ୍ଷଣାତ୍ ଆଜ୍ଞା ଦେଲେ କି କେତେକ ରାକ୍ଷସ ଯାଇ ସୁଦାମ କହିବା ମୁତାବକ କାଠ ତା'ର ଘରୁହିଁ ନେଇ ଆସିବେ ।

ସୁଦାମ କହିଲା, "କିନ୍ତୁ ମୋ ବୋହୂ ତ ଏମାନଙ୍କୁ ବିଶ୍ୱାସ କରିବ ନାହିଁ । ସେ ଆମମାନଙ୍କ ଭଳି ବୁଦ୍ଧିମାନ ନୁହେଁ ! ତେବେ ତା'ର ଗୋଟିଏ ଭଲ ଗୁଣ ଅଛି । ସେ ଯାହାଠି ରାଜଲକ୍ଷଣ ଥିବ, ତାକୁ ଚିହ୍ନି ଦେବ । ଆପଣ ଯଦି ଆପଣଙ୍କ ପୁଅକୁ ପଠାଇ ଦିଅନ୍ତେ, ତେବେ ସେ ସବୁ କାଠ ଦେଇ ଦିଅନ୍ତା ।" ବୋହୂକୁ କହିବେ ଆମେ ଦୁହେଁ ଆପାତତଃ ଛେଳା ହୋଇ ଯାଇଛୁଁ ବୋଲି ଯାଇ ପାରିଲୁଁ ନାହିଁ ।"

ରାଜା ତା' କଥାରେ ରାଜି ହୋଇ ନିଜ ପୁଅକୁ ତିନି ରାକ୍ଷସଙ୍କ ସହ ସୁଦାମ ଘରକୁ ପଠାଇଲେ । ସେମାନେ ସେ ଦେଶରେ ପହଞ୍ଚି ସୁଦାମ ଘରକୁ ଗଲେ ଓ ଶୀଲକୁ ସବୁ କଥା କହିଲେ । ଶୀଲ ସବୁ କିଛି ବୁଝିନେଲା ଓ ବୁଦ୍ଧିର ସହିତ କାମ କଲା । ସେ ରାକ୍ଷସ-ରାଜର ପୁଅକୁ କହିଲା, "ତମେ ଏପଟେ ଆସ । ଆମର ଗୋଟାଏ ସମ୍ପୂର୍ଣ୍ଣ ଘର ନାନା ରକମ କାଠରେ ଭରା । ତମର ଯାହା ଯାହା ଦରକାର ସେଇଠାରୁ ବାଛି ନିଅ ।" ଘର ଅନ୍ଧାର ଥିଲା । ରାକ୍ଷସ ରାଜାର ପୁଅ ସେ ଘରେ କାଠ ଦେଖିବାକୁ ପଶିବା ମାତ୍ରେ ଶୀଲ ଘରଟିକୁ ବନ୍ଦ କରି ବାହାରୁ ତାଲା ଦେଇଦେଲା ।

"ମୋ ସ୍ୱାମୀ ଓ ଶ୍ୱଶୁର ଯେମିତି ଛେଳା ହୋଇଛନ୍ତି, ତମେ ବି ବର୍ତ୍ତମାନ ସେମିତି

ଚୋର ବୋଲି ଜାଣ !” ଝିଅଟି ଡରକା ଦେଇ ଶୀଘ୍ର ରାକ୍ଷସ-ରାଜପୁତ୍ରଙ୍କୁ କହିଲା ।

ତା’ପରେ ବାହାରକୁ ଆସି ରାକ୍ଷସ ନାବିକ-ମାନଙ୍କୁ ଡାକି କହିଲା, “ଦେଖ, ତୁମ ରାଜପୁତ୍ର ଘରେ ଥିବାବେଳେ ଘର ହଠାତ୍ ବନ୍ଦ ହୋଇଗଲା ଓ ତାଲା ମଧ୍ୟ ପଡ଼ିଗଲା । ମୁଁ କିଛି କରିନାହିଁ । ତେବେ ଯେତେ ଚେଷ୍ଟା କଲେ ମଧ୍ୟ ଖୋଲୁନାହିଁ । ଚାବି ତ ମୋର ସ୍ୱାମୀ ଓ ଶଶୁରଙ୍କ ପାଖରେ ଅଛି । ଏବେ କ’ଣ କରାଯିବ ? ଯାଇ ସେମାନଙ୍କୁ ଆଣ । ନହେଲେ ଏଠାରୁ ରାଜପୁତ୍ର ଫେରି ପାରିବେ ନାହିଁ ।” ପରିସ୍ଥିତିର ଗୁରୁତ୍ୱ ବୁଝି ସେମାନେ ଶୀଘ୍ର ରାକ୍ଷସ ରାଜା ପାଖକୁ ଫେରିଯାଇ ସବୁ କହିଲେ ।

ରାଜା ବିରକ୍ତ ହୋଇ ସୁଦାମ ଓ ଲକ୍ଷ୍ମଣକୁ ସେଠାରୁ ମୁକ୍ତ କରି ଦେଲେ ଓ ଫେରିଯାଇ ଶୀଘ୍ର ତାଙ୍କ ପୁଅକୁ ପଠାଇ ଦେବାକୁ କହିଲେ ।

“ମହାରାଜ, ଆମେ ତ ଆପଣଙ୍କ କାମ କରିବା ପାଇଁ ଏଠାରେ ଥିଲୁ । ଆମକୁ ଫେରିଯିବା ଏତେ ଶୀଘ୍ର ଆମର କ’ଣ ଦରକାର ? ଏତେ ଦୂରକୁ ଆପଣଙ୍କ ପାଖକୁ ଆସି କ’ଣ ଖାଲି ହାତରେ ଫେରିବୁ ?” ସୁଦାମ କହିଲା ।

ରାଜା ବୁଝିଲେ ଏମାନଙ୍କୁ ସନ୍ତୁଷ୍ଟ ନ କଲେ ପୁଅ ପ୍ରାଣ ନେଇ ଫେରିବା ସନ୍ଦେହ ଜନକ । ତେଣୁ ସେ ଅଳ୍ପ ହସି କହିଲେ, “ନା ନା, ତା’ କି କେବେ ହୁଏ ? ମୁଁ ତୁମକୁ କିଛି ଧନ ନିଶ୍ଚୟ ଦେବି ।” ଏହା କହି ରାଜା ସେମାନଙ୍କୁ ଅନେକ ସୁନା ଓ ରତ୍ନ ଦେଲେ । ସେମାନେ ଖୁସିରେ ଫେରିଲେ ଓ ସେଇ ନୌକାରେ ରାଜପୁତ୍ରଙ୍କୁ ଫେରାଇ ପଠାଇ ଦେଲେ । ଆଉ ଯେଉଁ ଧନ ସେଠାରୁ ସେମାନେ ଆଣିଥିଲେ ସେଥିରେ ଆରାମରେ ଖାଇ ପିଇ ଚଳିଲେ । ଆଉ କ୍ଷେତକୁ ଯାଇ ବାପ ପୁଅଙ୍କୁ ବହୁତ ପରିଶ୍ରମ ପଡ଼େ ନାହିଁ ।





## ପଶୁପକ୍ଷୀ

ଦକ୍ଷିଣ ଆମେରିକାରେ ଏକ ପ୍ରକାର ଭାଲୁ ଥା'ନ୍ତି । ସେମାନଙ୍କ ଆଖି ଚାରିପାଖରେ ଚଷମା ପରି ଗୋଲକାର ହୋଇ ଧଳା ବାଳ ସବୁ ଉଠିଥାଏ । ସେଥିପାଇଁ ସେମାନଙ୍କୁ ଚଷମା-ବାଲା ଭାଲୁ ବୋଲି କୁହାଯାଏ ।

### ଚଷମାବାଲା ଭାଲୁ



### ଜେଲି ମାଛ

ଅଷ୍ଟ୍ରେଲିଆରେ ଦେଖାଯାଉଥିବା ଏକ ପ୍ରକାର ଜେଲି ମାଛ ଅତ୍ୟନ୍ତ ମାରାତ୍ମକ । ସେମାନଙ୍କ ଶରୀରରୁ ଚାରିକୋଟି ସଂଖ୍ୟାର ଅତ୍ୟନ୍ତ ସରୁ ସରୁ ସୂତାପରି କଣ୍ଟା ଲଟକି ରହିଥାଏ । ଯଦି ମନୁଷ୍ୟ ତାହାର ସଂସ୍ପର୍ଶରେ ଆସେ ତେବେ ସେସବୁର ବିଷଜ୍ୱାଳାରେ ଗାଣ୍ଡି-ମିନିଟରେ ପ୍ରାଣ ତ୍ୟାଗ କରେ ।

ବଡ଼ ବଡ଼ ପତର ବୋଡ଼ାର ଦେହରେ ପ୍ରାୟ ଦୁଇ ହଜାର ମାଂସପେଶୀ ଥାଏ ବୋଲି ବୈଜ୍ଞାନିକମାନେ ମତ ଦେଇଛନ୍ତି । ମଣିଷ ଦେହରେ ମାତ୍ର ସାତଶହ ମାଂସପେଶୀ ଥାଏ ।



### ପତରବୋଡ଼ା

Anil Kumar Panigrahy

# ଲାଇଫବୟ୍ ଯେଉଁଠି, ସ୍ୱାସ୍ଥ୍ୟ ସେଇଠି।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



K. P. A. Swamy



A. L Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଆମ୍ବଗଛ ମୂଳେ କରୁଛି ପୂଜା, ଗଳାରେ ତାହାର ରୁଦ୍ରାକ୍ଷ ମାଳ !

ଦ୍ୱିତୀୟ ଚିତ୍ର : ଜିଭ କାଢ଼ି ମୁଣ୍ଡ ଖଣ୍ଡେଇ ଦେଉଛି, "କହୁଛି ମୁଁ କଲିକତାର କାଳୀ !"

ପୁରସ୍କାର ବିଜୟିନୀ : କୁମାରୀ ସୁନନ୍ଦା ନାୟକ, କୋରାପୁଟ ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

---

## ପ୍ରଶ୍ନମାଳାର ଉତ୍ତର

୧. ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ, ବଳରାମ ଦାସ, ଶିଶୁ ଅନନ୍ତ, ଯଶୋବନ୍ତ । ୨. କୋର୍ଣ୍ଣିକାରେ । ୩. ଅନ୍ନପୂର୍ଣ୍ଣା ଥିଏଟର୍ ଏବଂ ଓଡ଼ିଶା ଥିଏଟର୍ସ । ୪. ରାଧାନାଥ ରାୟ । ୫. "ଅଷ୍ଟଶତାବ୍ଦୀରେ ଓଡ଼ିଶା ଓ ତହିଁରେ ମୋର ସ୍ଥାନ ।"

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.